# ମୋ ଗାଆଁ ମୋ କବିତା

ରଚନା - ବାଉରିବନ୍ଧୁ ଲେଙ୍କା


- ପ୍ରକାଶକ - ଆସ୍ଥା ମିଡ଼ିଆ, ଭୁବନେଶ୍ୱର
- ପ୍ରଥମ ପ୍ରକାଶ - ୨୦୧୮
- ଅକ୍ଷର ସଜ୍ଜା - ଶିବା ଡି.ଟି.ପି. ସେଣ୍ଟର, ଚଣ୍ଡୀ ଛକ, କଟକ
- ମୁଦ୍ରଣ - ଆନନ୍ଦ ପ୍ରିଣ୍ଟର୍ସ, ଚଣ୍ଡୀ ଛକ, କଟକ



- ପ୍ରାପ୍ତିସ୍ଥାନ - ବି୪୦୩, ପର୍ଲ ରେସିଡେନ୍ସି,
  ଦୁର୍ଗାମାଧବ ନଗର, ଭୁବନେଶ୍ୱର
  ୮୨୪୯୧୨୮୮୨୫

  Flat No. - B403
  The Pearl Residency
  Durgamadhab Nagar,
  Bhubaneswar
  Mobile : 8249128825


- ମୂଲ୍ୟ - ଟ.୬୦/- ମାତ୍ର    Price - Rs.60/- only

# ଉତ୍ସର୍ଗ

ମୋ ଗାଁର ଆବାଳ ବୃଦ୍ଧ ବନିତା ସମସ୍ତ ଅଧିବାସୀଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା ଓ ପ୍ରେମର ନିଦର୍ଶନ ସ୍ୱରୂପ ଏହି ସଂକଳନକୁ ଉତ୍ସର୍ଗ କରୁଛି ।

– ବାଉରିବନ୍ଧୁ

## କୃତଜ୍ଞତା

ପୁସ୍ତକଟିକୁ ସମ୍ପୂର୍ଣ୍ଣ କରିବାରେ ମାନସିକ ସ୍ତରରେ ମୋତେ ଅକୁଣ୍ଠ ସହଯୋଗ କରିଥିବା ଓ ପ୍ରେରଣା ପ୍ରଦାନ କରିଥିବା ମୋର ସହଧର୍ମିଣୀ, କନ୍ୟା, ପୁତ୍ର, ପୁତ୍ରବଧୂ ଓ ଜାମାତାମାନଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ।

– ବାଉରିବନ୍ଧୁ

# ମୁଖବନ୍ଧ

ଗାଆଁ, ଗ୍ରାମ, ପଲ୍ଲୀ ଏଇ ଶବ୍ଦଗୁଡ଼ିକ ଏବେ କେବଳ ସରକାରୀ ଫାଇଲ ପତ୍ର ଓ ମିଡିଆର ଆଲୋଚନାରେ ସୀମାବଦ୍ଧ ରହିଛି । ସାମ୍ପ୍ରତିକ ସମାଜରେ ଗାଆଁ କହିଲେ ଅନେକେ ବୁଝିବାରେ ହୁଏତ ଅସମର୍ଥ ହେବେ ।

କିନ୍ତୁ ଆମର ବାଲକାଳ ସେଇ ଗ୍ରାମ୍ୟ ପରିବେଶ ଆଜି ମଧ୍ୟ ଆମର ସ୍ମୃତିରେ ଏକ ଅମୂଲ୍ୟ ରତ୍ନ ହୋଇ ସାଇତା ରହିଛି । ଗ୍ରାମର ସ୍ନେହସିକ୍ତ ସମ୍ପର୍କ, ପାରମ୍ପରିକ ଖେଳ, ଉତ୍ସବ ଅନୁଷ୍ଠାନ ଏଇସବୁ ଏବେ ସଂଗ୍ରହାଳୟରେ ସାଇତା ହୋଇ ରହିସାରିଲାଣି ।

ସହରାଭିମୁଖୀ ସମାଜକୁ ବନ୍ଧୁ ଲେଙ୍କା ବାବୁ ନିଜର ସଶକ୍ତ ଲେଖନୀ ମାଧ୍ୟମରେ ଗ୍ରାମର ମହତ୍ତ୍ୱ ବିଷୟରେ ସଚେତନ କରିବା ପାଇଁ ଏକ ସାଧୁ ଓ ସ୍ୱାଗତଯୋଗ୍ୟ ଉଦ୍ୟମ କରିଛନ୍ତି । ମୋର ଦୃଢ଼ ବିଶ୍ୱାସ ଏହି ରଚନାଗୁଡ଼ିକ ଚିନ୍ତନଶୀଳ ଓ କୋମଳ ଭାବନା ସମ୍ପନ୍ନ ପାଠକଙ୍କୁ ପସନ୍ଦ ହେବ ।

– ଉଦୟନ ସୂପକାର

# ନିଜକଥା

ମୋର ପ୍ରଥମ ପ୍ରକାଶିତ କବିତା ସଂକଳନ ''ଖୋଲି କହିଦେଲି କଥା ମନର'' ପୁସ୍ତକରେ ନିଜ ବିଷୟରେ କିଛି ଲେଖିସାରିଛି । ତଥାପି ପାଠକମାନଙ୍କର ଅବଗତି ନିମନ୍ତେ ମୋର ଏହି ଚତୁର୍ଥ କବିତା ସଂକଳନ ''ମୋ ଗାଆଁ ମୋ କବିତା'' ପୁସ୍ତକରେ ନିଜ ସମ୍ବନ୍ଧରେ ସଂକ୍ଷେପରେ କିଛି ଜଣାଇବାକୁ ଉଚିତ ମନେକରି ଦୁଇପଦ ଲେଖୁଛି ।

ତା୧୨.୦୨.୧୯୫୩ରିଖ ଦିନ କଟକ ଜିଲ୍ଲାର ନିଆଳି ଥାନ ଅନ୍ତର୍ଗତ ତରଡାପଡା ନାମକ ଏକ ଅପରିଚିତ ଗ୍ରାମର ଏକ ସାଧାରଣ ପରିବାରରେ ମୋର ଜନ୍ମ । ବାଲ୍ୟାବସ୍ଥା ଓ ସ୍କୁଲ ଶିକ୍ଷା ଗାଁରେ ହିଁ କଟିଥିଲା । ସ୍କୁଲରେ ପଢ଼ିବା ସମୟରୁ ଯଦିଓ ମନରେ କବିତା ପ୍ରତି ରୁଚି ରହିଥିଲା ମନ ମଧ୍ୟରେ ସଂକୋଚ କାରଣରୁ ତାହା ମନ ଭିତରେ ହିଁ ଲୁକ୍କାୟିତ ହୋଇ ରହିଗଲା । ପାଠପଢ଼ା ପରେ ଚାକିରୀ ଜୀବନ ଆରମ୍ଭ ହେଲା ୟୁକୋ ବ୍ୟାଙ୍କରେ । ପରେ ପରେ ବିବାହ କରି ସଂସାର ବନ୍ଧନରେ ବାନ୍ଧି ହୋଇଗଲି । ସାଂସାରିକ ଜଞ୍ଜାଳ ଓ ଚାକିରୀ ଜୀବନ ସମୟରେ କବିତା ଲେଖିବା ପାଇଁ ଯେଉଁ ପରିବେଶ ଓ ସମୟ ଆବଶ୍ୟକ ତାହା ମିଳିପାରି ନଥିଲା । ପ୍ରଥମ ପ୍ରକାଶିତ କବିତା ସଂକଳନରେ ମୋର ପଢ଼ିବା ସମୟର ଲିଖିତ କେତୋଟି କବିତା ସ୍ଥାନ ପାଇଛି ।

ଅବସର ଜୀବନ ଆରମ୍ଭ ହେଲା ୨୦୧୩ ମାର୍ଚ୍ଚ ମାସ ଠାରୁ । ସମୟ ଅତିବାହିତ କରିବା ପାଇଁ କବିତା ଲେଖିବା ପାଇଁ ଇଚ୍ଛା ପୁଣି ମନ ଭିତରେ ଅଙ୍କୁରିତ ହେଲା । ସାମୟିକ କଳ୍ପନା, ବିଭିନ୍ନ ସମୟର ଅନୁଭୂତି, ସାମାଜିକ ଘଟଣାବଳିକୁ ନେଇ ମନର ପ୍ରତିକ୍ରିୟା ଓ ସମାଲୋଚନା, ଗ୍ରାମ୍ୟ ଜୀବନ ସହିତ ଜଡ଼ିତ ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ସମୟ କ୍ରମେ ଘଟୁଥିବା ପରିବର୍ତ୍ତନକୁ ରୂପାୟନ କରିବାକୁ ପ୍ରୟାସ ଆରମ୍ଭ କରିଛି ।

ପ୍ରଥମ ପ୍ରକାଶିତ କବିତା ସଂକଳନକୁ ପ୍ରକାଶ କରିବାରେ ମୋର ସହକର୍ମୀ ବନ୍ଧୁ ଯେ କି ଜଣେ ପ୍ରତିଷ୍ଠିତ କବି, ଲେଖକ, ନାଟ୍ୟକାର ଓ ବହୁ ପ୍ରତିଭାର ଅଧିକାରୀ ଶ୍ରୀ ଉଦୟନ ସୂପକାରଙ୍କର ଭୂମିକା ମୋ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆଗକୁ ଲେଖିବା ପାଇଁ ତାଙ୍କର ପ୍ରେରଣା ଓ ମୋର ଧର୍ମପତ୍ନୀ, ପୁତ୍ର, ପୁତ୍ରବଧୂ, ଝିଅ ଓ ଜାମାତାମାନଙ୍କର ଆଗ୍ରହ ମୋତେ ଏ ଦିଗରେ ଆଗକୁ ବଢ଼ିବାରେ ବହୁଗୁଣରେ ଉତ୍ସାହିତ କରିଛି । ଏତଦ୍‌ବ୍ୟତୀତ ଏଥିରେ ସଂକଳିତ ଅନେକ କବିତା ମୋର ଫେସ୍‌ବୁକ୍‌ର ପୃଷ୍ଠା ମଣ୍ଡନ କରିସାରିଛି ଓ ସେଗୁଡ଼ିକୁ ପାଠକରି କେତେଜଣ ବନ୍ଧୁ ନିୟମିତ ଭାବେ ମତାମତ ଦେଇ ଲେଖିବାକୁ ଉତ୍ସାହିତ କରିଛନ୍ତି । ସେଥିପାଇଁ ଶ୍ରୀ ସୂପକାରଙ୍କ ସହିତ ଫେସ୍‌ବୁକ୍‌ରେ ମତାମତ ଦେଇଥିବା ବନ୍ଧୁଗଣ ଓ ସର୍ବୋପରି ମୋର ଧର୍ମପତ୍ନୀ ଓ ପରିବାରର ସମସ୍ତ ସଦସ୍ୟମାନଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଓଡ଼ିଆ ସାହିତ୍ୟ ବହୁଗୁଣରେ ଋଦ୍ଧିମନ୍ତ । ଅନେକ ଜ୍ଞାନୀ, ଗୁଣୀ ଓ ପ୍ରତିଷ୍ଠିତ କବି ଓ ଲେଖକମାନଙ୍କର ଲେଖାରେ ସମୃଦ୍ଧ । ହେଲେ ଦୁର୍ଭାଗ୍ୟର ବିଷୟ ଯେ ଓଡ଼ିଆ ପାଠକ ପାଠିକାମାନଙ୍କର ସଂଖ୍ୟା କ୍ରମଶଃ କମିବାରେ ଲାଗିଛି । ବିଶାଳ ସାଗରରେ ଏକ ଜଳବିନ୍ଦୁର ସ୍ଥାନସ୍ୱରୂପ ମୋର ଏହି କ୍ଷୁଦ୍ର ପ୍ରୟାସ ଓଡ଼ିଆ କବିତା ସାଗରରେ ''କବିତା ବିନ୍ଦୁ''ର ସ୍ଥାନ ନେବ କି ନାହିଁ ମୁଁ ଜାଣେନା । ତଥାପି ଏକ ସାଧାରଣ ମଣିଷ ଭାବେ କବିତା ସଂକଳନଟି ପାଠକ ପାଠିକାମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ଆଶା କରୁଛି ।

ବିନୀତ

ବାଉରିବନ୍ଧୁ ଲେଙ୍କା

# ମୋ ଗାଆଁ ମୋ କବିତା

ଗାଆଁ ମାଟିର ବାସ୍ନା ନିଆରା । ଗାଆଁ ମାଟିରେ ଜନ୍ମ ଯିଏ ନେଇଛି ତା'ର ପାଣି ପବନରେ ବଢିଛି ସେ ହିଁ ବୁଝିପାରିବ ତା'ର ବିଶେଷତ୍ୱ । ମୋର ଜନ୍ମ ଏକ ଛୋଟ ଗାଆଁରେ । ତାରି ପାଣି ପବନରେ ବଢିଛି । ଗାଆଁର ଚାଲିଚଲଣି, ସଂସ୍କୃତି, ପୂନେଇଁ ପରବ, ବିବାହ ବ୍ରତ, ମେଳଣ ଯାତ୍ରା ଆଦି ସମସ୍ତ କାର୍ଯ୍ୟକ୍ରମକୁ ଅଙ୍ଗେ ଅଙ୍ଗେ ଅନୁଭବ କରିବାର ସୌଭାଗ୍ୟ ପାଇଛି । ଗାଆଁର ପ୍ରାକୃତିକ ଶୋଭାକୁ ଉପଭୋଗ କରିଛି । ଧରାପୃଷ୍ଠରେ ଋତୁଚକ୍ରର ପରିବର୍ତ୍ତନକୁ ଅଙ୍ଗେ ନିଭେଇଛି । ଗୋଟିକ ପରେ ଗୋଟିଏ ଛଅଟି ଋତୁ ଓହ୍ଲାଇ ଆସିଥାନ୍ତି ଧରାପୃଷ୍ଠକୁ । ଏହି ଛଅଟି ଋତୁର ସାମାହାର ମୋ ଚକ୍ଷୁରେ ଋତୁରାଣୀ ରୂପେ ଦୃଶମାନ ହୋଇଛି । ଋତୁରାଣୀର ବିଭିନ୍ନ ଅଙ୍ଗଭଙ୍ଗୀ ବା କାର୍ଯ୍ୟକଳାପକୁ ଗୋଟିଏ ଗୋଟିଏ ଋତୁର ଉପସ୍ଥିତିର ସଂକେତ ଭାବେ ଲିପିବଦ୍ଧ କରିଛି ମୋର ଏହି ନିମ୍ନ ପ୍ରଦତ୍ତ କବିତା ମାଧ୍ୟମରେ ।



## ଋତୁ ରାଣୀ

ତୁମ ସ୍ପର୍ଶ ଅନୁଭବ କରେ
ଚଇତର ଚୋରା ମଳୟରେ ।
ତୁମ ମନ ଅଙ୍ଗର ଉତ୍ତାପ
ଜାଣିହୁଏ ଗ୍ରୀଷ୍ମ ବଳୟରେ ।।

ତୁମ ଅଙ୍ଗରାଗ ବାସ୍ନା ଖେଳେ
ଆଷାଢ଼ର ଭିଜାମାଟି ଗନ୍ଧେ ।
ତୁମ ଆଖି ଲୁହ ଝରିପଡ଼େ
ଶ୍ରାବଣରେ ବର୍ଷାରଛନ୍ଦେ ॥

ତୁମର ସେ ଆଡରୁଷା ଲାଗେ
ଭୋଦୁଅର ଟାଆଁସିଆ ଖରା ।
ତୁମ ନାଲି ବଧୁଲି ଅଧରେ
ହସୁଥାଏ ଅଶିଣର ତାରା ॥

ତୁମ ସିକ୍ତ କୁନ୍ତଳୁ ଶିଶିର–
ମୁକ୍ତା ଝରେ ଘାସଗାଲିଚାରେ ।
ତୁମେ ମନେପଡ଼ ମାର୍ଗଶିର
ଶୀତରାତି ପାହାନ୍ତି ପ୍ରହରେ ॥



ବାଲ୍ୟାବସ୍ଥାରୁ ଯୁବକ ଅବସ୍ଥା ପର୍ଯ୍ୟନ୍ତ ଗାଆଁରେ ରହିବାର ସୌଭାଗ୍ୟ ମିଳିଛି। ତପ୍ରରେ ଚାକିରି ଜୀବନ ଆରମ୍ଭ ହୁଏ ଓ କର୍ତ୍ତବ୍ୟର ଆହ୍ୱାନରେ ଗାଆଁ ମାଟି ଠାରୁ ଦୂରରେ ରହିବାକୁ ପଡ଼େ। ତଥାପି ଗାଆଁ ସହିତ ସମ୍ପର୍କ ଅତୁଟ ଥିଲା ଏବେ ବି ରହିଛି। ସମୟ ଗଡ଼ି ଚାଲିଛି ଆଉ ତା ସହିତ ବୟସ ବି ବଢ଼ି ଚାଲିଛି। ବୃତ୍ତିଗତ ଜୀବନର ସମାପ୍ତି ଘଟିଛି। ଅବସର ଜୀବନରେ ଗାଆଁକୁ କିପରି ବା ଭୁଲି ପାରନ୍ତି। ଅବସ୍ଥା ଚକ୍ରରେ ପିଲାଦିନର ସାଥୀମାନେ ଭିନ୍ନ ଭିନ୍ନ ସ୍ଥାନରେ ରହିଛନ୍ତି। ଅବସର ଜୀବନରେ ଆଜି ସେ ସବୁ ସ୍ମୃତିପଟରେ ଜୀବନ୍ତ ହୋଇ ଉଠୁଛି। କାଲି ପରି ଲାଗୁଛି। ଗାଆଁର ଆମ୍ବ ପଣସ ତୋଟାରେ ସାଙ୍ଗମାନଙ୍କ ସହ ଲୁଣିପଟି ଖେଳ, ବରୁଣେଇ ବରଗଛରେ ଡାଳ ମାଙ୍କୁଡ଼ି ଖେଳ, ଜଦାଖାଇ ଗଛରୁ ପାଣିକୁ ଡେଇଁ ବୁଡ଼ାବୁଡ଼ି ଖେଳ, ରଜରେ ଗୁଡ଼ି ଉଡ଼େଇବା ଓ ବାଗୁଡ଼ି ଖେଳିବାର ସ୍ମୃତି ସବୁ ଆଜି ମନକୁ ଆସି ଯାଉଛି । ସେ ସମୟର ଗାଆଁର ରଙ୍ଗ ରୂପ ଏବେ ବି ଜଳ ଜଳ ହୋଇ ଆଖି ଆଗରେ ନାଚି ଯାଉଛି । ଏଇ ପୃଷ୍ଠଭୂମି ଉପରେ ଅବୁଝା ମନକୁ ଶାନ୍ତ୍ୱନା ଦେବାକୁ ଯାଇ ବିଭିନ୍ନ ସମୟରେ ମନ ମଧ୍ୟରେ ଚିତ୍ର ବା ଭାବନା ଜାଗ୍ରତ୍ ହୋଇଛି ତାକୁ କବିତାରେ ରୂପ ଦେବାକୁ ଚେଷ୍ଟା କରିଛି । ନିଅନ୍ତୁ ଭେଟି ଦେଉଛି ନିମ୍ନ-ପ୍ରଦତ୍ତ ଏହି ତିନୋଟି କବିତା ।



## ଏହି ମୋର ଗାଆଁ

ସାଗରେ ନାଚେ ନୀଳ ତରଙ୍ଗ
ଆକାଶେ ଭସା ମେଘର ରଙ୍ଗ
ଧୂସର ଏଇ ମାଟିର ବକ୍ଷେ
ଶ୍ୟାମଳୀ ଶସ୍ୟ କନ୍ୟା ।

ଲଭି ବରଷା ପ୍ରିୟର ସଙ୍ଗ
ମନରେ ଭରି କେତେ ଉମଙ୍ଗ
ସୁଲୁ ସୁଲିଆ ପବନେ ନାଚେ
ଛୁଟାଇ ରୂପ ବନ୍ୟା ।।

ମୃଦୁ ସମୀର ବହଇ ମନ୍ଦେ
ବରଷେ ମେଘ ଚପଳ ଛନ୍ଦେ
ମହକି ଯାଏ ଫୁଲର ଗନ୍ଧେ
ମୋ ଗାଆଁ ପରିବେଶ ।
ସକାଳସନ୍ଧ୍ୟା ଆରତୀ ବେଳ
ହୋଇଲେ ବାଜେ ଘଣ୍ଟ ମର୍ଦ୍ଦଳ
ଗାଆଁ ମନ୍ଦିରୁ ଆସଇ ଭାସି
ବିଭୁଙ୍କ ଶୁଭାଶିଷ ।।

ଏଇ ମୋର ଛୋଟ ଗାଆଁଟି
ପୋଥି ପତରେ ନାହିଁ ନାଆଁଟି
ତାହାରି କୋଳେ ଜନମି ମୁହିଁ
ମଣେ ନିଜକୁ ଧନ୍ୟ ।
ଯେଉଁଠି ଥିଲେ ଯେପରି ଥିଲେ
ଯିବି ମୁଁ ଧାଇଁ ବିପଦ ବେଳେ
ତା ସେବା କରି ପାରିଲେ ମୋର
ହୋଇବ ମହା ପୁଣ୍ୟ ।।





# ମୋ ଗାଆଁ

ଭାରି ଭଲ ଲାଗେ ମୋତେ
ଯେଉଁଠାରେ ଥିଲେ ଧାଇଁ ମୁଁ ଆସିବି
ବିପଦ ପଡିଲେ ତତେ ॥

ମୋର ସେଇ ଗାଆଁ ମାଟି
ମୋର ଜନ୍ମଭୂମି ମୋର ପୁଣ୍ୟଭୂମି
ଶେଷ ନିଶ୍ୱାସ ସେଇଠି ॥

ତାଆରି କୋଳରେ ବଢ଼ି
ନାଚିଛି ବୁଲିଛି ମଉଜ କରିଛି
ଖାଇଛି ଖିରି ଖେଚୁଡ଼ି ॥

ସୁନ୍ଦର ତା ତୋଟାମାଳ
ଝଙ୍କା ବରଗଛ ଓହଳେ ଖେଳିଛି
ଡାଳମାଙ୍କୁଡିର ଖେଳ ।
ତା ନଈନାଳ ପାଣିରେ
ସାଙ୍ଗସାଥୀ ମେଳେ ବୁଡାବୁଡି ଖେଳ
ଖେଳିଛି କେତେ ଖୁସିରେ ॥

ତାର ସେ ଆନ୍ଦିଆ ନଈ
ହଂସରାଜି ପାଣିକୁଆ ଖେଳୁଥିଲେ
ଫୁଟୁଥିଲା ପଦ୍ମ କଇଁ ॥

ମୁଣ୍ଡିଆ ପାହାଡ଼େ ଚଢ଼ି
ରଜ ପରବରେ ସାଙ୍ଗସାଥୀ ମେଳେ
ଉଡାଉଥିଲି ମୁଁ ଗୁଡି ॥

ତାର ସେଇ ବିଲବାରି
ଭୋଦୁଆ ଖରାରେ ସୁନ୍ଦର ଦିଶଇ
ସୁନ୍ଦର ଶସ୍ୟ ଲହରୀ ॥

ଦଶହରା ଦୀପାବଳି
ଜାଗର ଯାତରା ଦୋଳ ଫଗୁଖେଳ
ଖେଳୁଥିଲୁ ସର୍ବେ ମିଳି ॥

ସମୟ ଯାଇଛି ବହି
ବଦଳି ଯାଇଛି ଗାଆଁର ସେ ରୂପ
ସହରୀ ସଭ୍ୟତା ଛାଇ ॥

ସେଇ ମୋର ଗାଆଁ ମାଟି
ସବୁଠୁ ସୁନ୍ଦର ସବୁଠୁ ମୋ ପ୍ରିୟ
ଶେଷ ନିଶ୍ୱାସ ସେଇଠି ॥





# ହଜିଲା ଦିନ

ମନେ ଖୋଜେ ମୋର ହଜିଲା ଦିନକୁ
ସମୟ ଅଟକେ ନାହିଁ ।
ସମୟଟା ଯଦି ପଛକୁ ଫେରନ୍ତା
ସାଉଁଟି ନିଅନ୍ତି ମୁହିଁ ॥
ସମୟ ତୁ କ'ଣ ସବୁଦିନ ପାଇଁ
ଚାଲିଥିବୁ ଖାଲି ଆଗକୁ ।
ତୋର କ'ଣ କି ହଜାଇ ଆସିନୁ
ଫେରିଯାଇ ଖୋଜିବାକୁ ॥
ଶୈଶବ କୈଶୋର ଯୌବନ ମୋର
ଯାଇଛି ଅତୀତ ହୋଇ ।
ବୋଧ ହୁଏ ଏହି ଅବସ୍ଥା ଚକ୍ରର
ଆୟତ୍ତରେ ନାହୁଁ ତୁହି ॥
ଥାଆନ୍ତୁ ଯଦି ତୁ ହଜାଇ ଅତୀତେ
ତୋର ଶୈଶବ ଯୌବନ ।
କହିବାକୁ ତତେ ପଡନ୍ତା ନାହିଁରେ
ବୁଝିପାରନ୍ତୁ ମୋ ମନ ॥



ଫଗୁଣ ଆସେ । ସାଙ୍ଗେ ତାର ସାଥୀ ବସନ୍ତ । ନବ ପଲ୍ଲବିତ ହୁଅନ୍ତି ବୃକ୍ଷ ରାଜି । ଦକ୍ଷିଣ ଦିଗରୁ ମନ୍ଦ ମନ୍ଦ ମଳୟ ବହେ । ନାନା ଜାତିର ଫୁଲ ଫୁଟେ ବନ ଉପବନରେ । ଆମ୍ବ ବଉଳର ବାସ୍ନା ଚହଟେ । କୋଇଲିର କୁହୁ ତାନ ତନୁ ମନରେ ପୁଲକ ଆଣେ । ମଧୁମାସର ଉପସ୍ଥିତି ଅନୁଭବ କରନ୍ତି ପ୍ରିୟ ଆଉ ପ୍ରିୟତମା । ଗାଆଁର ରଙ୍ଗ ବଦଳେ । ରାଧାକୃଷ୍ଣଙ୍କର ବସନ୍ତ ରାସ ଅନୁଷ୍ଠିତ ହୁଏ । ଦୋଳ ବିମାନରେ ବୁଲି ବୁଲି ଭୋଗ ଖାଆନ୍ତି ରାଧା ଓ ମାଧବ । ସେ ସବୁ ସ୍ମୃତି ଏବେ ଜୀବନ୍ତ ହୋଇ ଉଠୁଛି । ଦୋଳ ମେଳଣ ଓ ଫଗୁ ଖେଳରେ ସମୟ ଆନନ୍ଦରେ କଟି ଯାଏ । ବସନ୍ତର ସ୍ୱାଗତ ଗୀତିକା ସହ ଦୋଳ ଓ ରଙ୍ଗ ଖେଳର ଝଲକ ଏହି କବିତା ମାଧ୍ୟମରେ ଦେବାକୁ ଚେଷ୍ଟା କରିଛି । ପଢ଼ନ୍ତୁ ନିମ୍ନ ପ୍ରଦତ୍ତ କବିତା ।



## ସ୍ୱାଗତ ବସନ୍ତ

ଫଗୁଣ ଆସିଛି ସଙ୍ଗେ ତାର ସାଥୀ ବସନ୍ତ
ବୃକ୍ଷରାଜି ଆଜି ନବ ପଲ୍ଲବେ ପଲ୍ଲବିତ ॥

ସକାଳ ସୂର୍ଯ୍ୟଙ୍କ ସୁନେଲି କୋମଳ କିରଣ
ମନ୍ଦ ମନ୍ଦ ବହିଆସୁଛି ଶୁଦ୍ଧ ସମୀରଣ ॥

ଆମ୍ବ ବଉଳର ବାସ୍ନା ଯାଉଅଛି ମହକି
କୋଇଲିର କୁହୁ ଶୁଭୁଅଛି ରହି ରହିକି ॥

ବିମଣ୍ଡିତ ବନ ଉପବନ ସଜ ସୁମନେ
ସତେ କେ ବାନ୍ଧିଛି ଗଭାରେ ଗଜରା ଯତନେ ॥

ପୁଲକିତ ଗୋପ ବୃନ୍ଦାବନ ବ୍ରଜ ଅଙ୍ଗନା
ମନେ ଜାଗେ ଆଜି ମୋହନ ମିଳନ ବାସନା ॥

ବସନ୍ତ ରାସରେ ଗୋପୀକାଙ୍କ ସହ ମୋହନ
ମାନିନୀ ରାଧାର କରିବେ ସେ ମାନ ଭଞ୍ଜନ ॥

ବ୍ରଜଦାଣ୍ଡେ ଫଗୁ ରଙ୍ଗର ଉଡିବ ଫୁଆରା
ରଙ୍ଗେ ଭିଜି ସର୍ବେ ନାଚିବେ ହୋଇ ମତୁଆରା ॥

ମଧୁମାସ ମନ୍ଦ ମଳୟ ପରଶେ ହରଷ
ଏ ମନ ଚାହିଁବ ଏକାନ୍ତରେ ପ୍ରିୟା ପରଶ ॥

ଆଗମନୀ ତବ କେତେ ଯେ ସୁନ୍ଦର ସରସ
ବିଦାୟରେ କିମ୍ପା ହୋଇଯାଅ ଏତେ ନିରସ ॥

ସ୍ୱାଗତ ବସନ୍ତ ଆସୁଥାଅ ପ୍ରତି ବରଷ
ସବୁରି ମନରେ ଭରୁଥାଅ ଖୁସି ହରଷ ॥





# ଦୋଳ

ଦୋଳରେ ଦେଖିବୁ ଦୋଳ ଗୋବିନ୍ଦଙ୍କୁ
ଚାପରେ ମଧୁସୂଦନ
ରଥରେ ବାମନ କରିଲେ ଦର୍ଶନ
ହେବନି ପୁନର୍ଜନମ ॥

ଆସିଛି ଫଗୁଣ ଆସିଛି ବସନ୍ତ
ଆସିଛିରେ ଦୋଳ ପରବ
ଫଗୁ ଦଶମୀରୁ ଦୋଳ ବିମାନରେ
ବୁଲିବେ ଶ୍ରୀରାଧା ମାଧବ ॥

ବାଣ ବାଜା ଆଉ ନିଶାଣ ସହିତ
ଗ୍ରାମରେ ମେଳଣ ଚାଲିବ
ଖୋଳ କରତାଳ ସାଙ୍ଗକୁ କୀର୍ତ୍ତନ
ଫଗୁ ରଙ୍ଗ ଖେଳ ଜମିବ
ଆସିଛି ଫଗୁଣ ଆସି ବସନ୍ତ
ଆସିରେ ଦୋଳ ପରବ ॥



# ରଙ୍ଗ

ଫଗୁଣ ନେବ ବିଦାୟ ଧରଣୀ ବକ୍ଷରୁ ଆଜି
ଅଙ୍ଗେ ତା ରଙ୍ଗର ଚିହ୍ନ ରଙ୍ଗର ବର୍ଷାରେ ଭିଜି ॥

ପଲ୍ଲୀରୁ ସହର ଯାଏ ଖେଳିବେ ସରବେ ହୋଲି
ହିଂସା ଦ୍ୱେଷ ଜାତି ଧର୍ମ ଭେଦ ଭାବ ମନୁ ଭୁଲି ॥

ସବୁ ରଙ୍ଗ ଆଜି ମିଶି ହୋଇଯିବ ଏକାକାର
ଏକ ଦେଶବାସୀ ଆମେ ଏକ ସଂସ୍କୃତି ଆମର ॥

ସାରା ଦେଶ ହେବ ବ୍ରଜ ନାଚିବେ ରାଧିକା କାହ୍ନା
ନାଚିବେ ସର୍ବ ଗୋପାଳ ସଙ୍ଗେ ସର୍ବ ଗୋପାଙ୍ଗନା ॥

ଏ ରଙ୍ଗ ପ୍ରୀତିର ରଙ୍ଗ ବୋଲି ପରସ୍ପର ଅଙ୍ଗେ
ଭୁଲି ଜାତି ଧର୍ମ ଭେଦ ରହିବା ଏକତ୍ର ସଙ୍ଗେ ॥



ବସନ୍ତ ଧୀରେ ଧୀରେ ଅପସରି ଯାଏ ଧରା ବକ୍ଷରୁ । ନିଦାଘର ଉଷ୍ଣ ପ୍ରବାହ ଧୀରେ ଧୀରେ ଜନ ଜୀବନକୁ ପ୍ରଭାବିତ କରେ । ଆଜିକାଲି ଗ୍ରୀଷ୍ମ ପ୍ରବାହ ଅତ୍ୟନ୍ତ ବିପଜ୍ଜନକ ଭାବେ ହେଉଛି । ଅନେକ ସ୍ଥାନରେ ଅଂଶୁଘାତ ଜନିତ ପ୍ରାଣ ହାନି ଘଟୁଛି । ସମୟ କ୍ରମେ ଜଳବାୟୁ ପରିବର୍ତ୍ତିତ ହେଉଥିବାରୁ ଏପରି ଅବସ୍ଥା ସୃଷ୍ଟି ହେଉଛି ବୋଲି କୁହା ଯାଉଛି । ମୋର ବାଲ୍ୟକାଳରେ ସ୍ଥିତି କିନ୍ତୁ ଅଲଗା ଥିଲା । ଆଜି ପରି ଗାଆଁଗଣ୍ଡା ସବୁ ରୁକ୍ଷ ଆଉ ଶ୍ରୀହୀନ ନଥିଲା । ବଣ ବୁଦା ତୋଟା ବହୁ ପରିମାଣରେ ଥିବା ଦୃଷ୍ଟିରୁ ସବୁଜିମା ମଣ୍ଡିତ ଥିଲା ଗ୍ରାମ୍ୟ ପରିବେଶ । ଉଷ୍ଣ ପ୍ରବାହର ଦୌରାତ୍ମ୍ୟ ଏପରି ମାତ୍ରାରେ ଅନୁଭୂତ ହେଉ ନଥିଲା । ସେ ଆମ୍ବ ପଣସ ତୋଟା, ବର ଅଶ୍ୱସ୍ତ ଗଛ, ବାଉଁବଣ ଆଉ ଦେଖିବାକୁ ମିଳୁନି । ମଣିଷ ଭୁଲି ଯାଉଛି ବୃକ୍ଷର ଉପକାରିତା । ଆଜି ଆଉ ଚଇତି ବହୁନି । ଟହ ଟହ ଖରାରେ କୃଷ୍ଣଚୂଡ଼ା ରୂପ ଯୌବନ ଦେଖେଇ ପରିହାସ କରୁଛି । ଗ୍ରୀଷ୍ମ ଅପରାହ୍ନରେ ଆକାଶରେ ହଠାତ୍ କଳା ବାଦଲ ଦେଖି ବର୍ଷା ପାଇଁ ଇନ୍ଦ୍ରଦେବଙ୍କୁ ସ୍ମରଣ କରୁଛନ୍ତି ଲୋକମାନେ । ଏହି ସବୁ ପରିସ୍ଥିତିର ଦୃଶ୍ୟ ବିଭିନ୍ନ ସମୟରେ ମୋ ମନରେ ଯେଉଁ ସବୁ ଭାବନା ସୃଷ୍ଟି କରିଛି ତାକୁ ମୁଁ କବିତାରେ ରୂପ ଦେବାକୁ ଚେଷ୍ଟା କରିଛି । ସେହି ସମ୍ବନ୍ଧୀୟ କେତୋଟି କବିତା ଭେଟି ଦେଉଛି ଆପଣମାନଙ୍କୁ ।

# ଚଇତି

ପଲ୍ଲୀ ହେଉ ବା ସହର
ଦିଶେ ଖାଲି କୋଠାଘର ।।

ବୃକ୍ଷଲତା ନାହିଁ କାହିଁ
ରକ୍ଷ ଦିଶୁଅଛି ଭୂଇଁ ।।

ନାହିଁ ସେ ଆମ୍ବ ବଗିଚା
ଦିଶେନି ଘାସ ଗାଲିଚା ।।

କୋଇଲି କରେନି କୁହୁ
ଝାଞ୍ଜି ଖରା ହୁହୁ ହୁହୁ ।।

ଏବେ ଚଇତ ସରିନି
ହେଲେ ଚଇତି ବହୁନି ॥

ଝାଞ୍ଜିର ଆତଙ୍କ ଦେଖି
ମନ ତା ଯାଇଛି ସୁଖି ॥

ଆସ ସବୁ ଦେଶବାସୀ
ଗଛ ଲଗାଇବ ମିଶି ॥

ସବୁଜିମା ଦେବା ଭରି
ଚଇତି ଆସିବ ଫେରି ॥





# କୃଷ୍ଣଚୂଡ଼ା ଚାହେଁ ଉତ୍ତର

ଗ୍ରୀଷ୍ମ ମଧ୍ୟାହ୍ନରେ ଝାଞ୍ଜି ପବନର ଡହକ
କୃଷ୍ଣଚୂଡ଼ା ହସେ ଦେଖାଇ ତା ରୂପ ଚମକ
ନ ଥାଉ ପଛେ ତା ମହକ
ଟାଣି ନିଏ ମନ ଦେଖଣାହାରୀର
ପଡେ ନାହିଁ ଆଖି ପଲକ ॥

ମନ ତା ଚଞ୍ଚଳ, ମାନେନି କାହାରି ଆୟତ୍ତ
ସମୟର କିଛି ନାହିଁ, ତା ଉପରେ କର୍ତ୍ତୃତ୍ୱ
ଅଙ୍ଗେ ଯୌବନର ଜୁଆର
ଖେଳିଗଲେ ଥରେ ମାନେ ନାହିଁ ଖରା
ବରଷା ବା ଶୀତ କାକର ॥

ଯାହାର ବା ଯେତେ ଥାଉ ଗୁଣ ରୂପ ସମ୍ଭାର
କେହି ନ ଜାଣିଲେ ନଦେଖିଲେ ସବୁ ଅସାର
କୃଷ୍ଣଚୂଡ଼ା ଚାହେଁ ଉତ୍ତର
ପ୍ରଚାରଧର୍ମୀ ଏ ଯୁଗ କି ଚାହେଁନା
ମୁକ୍ତ ପ୍ରଚାର ଓ ପ୍ରସାର ?





# ଗ୍ରୀଷ୍ମ ଅପରାହ୍ନ

ଗ୍ରୀଷ୍ମ ଅପରାହ୍ନ ନଇଁ ଆସିଲାଣି
କୃଷ୍ଣଚୂଡ଼ା ମାରେ ହାଇ
ଗଭାର ଗଜରା ଶୋଇ ଯାଇଥିଲା
ସନ୍ଧ୍ୟାରେ ଉଠିବ ବେଇଁ ॥

ଅଳସୀ ପ୍ରେମିକା କଳସୀ କାଖେଇ
ଯିବା ପାଇଁ ନଦୀକୂଳ
ଚମକି ଚାହାଁଇ ଆସିବେ ନାଗର
ହେଲେ ମୁହଁ ସଞ୍ଜବେଳ ॥





# ବର୍ଷା ଅପେକ୍ଷାରେ

ସନ୍ଧ୍ୟାକୁ ସ୍ୱାଗତ କରୁଛି
ଧୁମନ୍ତ ଏ ଗୋଧୁଳି ଲଗନ ।
ଦୂର ଦିଗ୍-ବଳୟେ
କଳା କଳା ମେଘର ପାହାଡ଼ କୋଳେ
ନୃତ୍ୟରତା ଚପଳାର ଚମକ ସାଙ୍ଗକୁ
ଭୟଙ୍କର ଘଡଘଡି ଶବ୍ଦର କମ୍ପନ ।।

ଆକାଶଟା ଦିଶେ ଖାଁ ଖାଁ
ଘନେଇ ଆସେ ଅନ୍ଧାର ।
ଜହ୍ନ ଆଉ ତାରା ମାନଙ୍କର
ନାହିଁ କିଛି ଖୋଜ ଖବର ।।

ସାରା ଦିନ ଅଗ୍ନୀବର୍ଷା ରୌଦ୍ର ତାପ
ଅସହ୍ୟ ଗୁଳଗୁଳିରେ ଅସ୍ୱସ୍ଥ ଜନଜୀବନ
ସାନ୍ଧ୍ୟ ଆକାଶରେ ଦୃଷ୍ଟି ଫେରଉଛି-
ଆଶା ତାର- ହୋଇ ଯାଆନ୍ତା କି ଦୟା
ଇନ୍ଦ୍ରଦେବଙ୍କର ।।



ଗ୍ରୀଷ୍ମ ଋତୁରେ ବିଭିନ୍ନ ପର୍ବ ପର୍ବାଣି ପାଳନ କରାଯାଇଥାଏ । ସେଥିମଧ୍ୟରୁ ଜଗନ୍ନାଥଙ୍କ ଚନ୍ଦନ ଯାତ୍ରା ପୁରୀରେ ପାଳନ କରାଯାଇଥାଏ । କେତେକ ଗ୍ରାମରେ ମଧ୍ୟ ଏହି ଚନ୍ଦନ ଯାତ୍ରା ଅନୁଷ୍ଠିତ ହୋଇଥାଏ । ମୋର ମନେଅଛି ଆମ ଗ୍ରାମର ନିକଟସ୍ଥ ପହଙ୍ଗା ଗ୍ରାମରେ ଏହି ଯାତ୍ରା ପାଳନ ହେଉଥିଲା । ପୁରୀରେ ଦେବ ଦେବୀମାନେ ବିମାନରେ ନରେନ୍ଦ୍ର ପୁଷ୍କରିଣୀକୁ ଦିନ ସମୟରେ ଓ ସନ୍ଧ୍ୟା ସମୟରେ ଯାଇ ଚାପ ଖେଳନ୍ତି । ଯେଉଁ ଗ୍ରାମ ମାନଙ୍କରେ ଚନ୍ଦନ ଯାତ୍ରା ପାଳନ କରାଯାଉଛି ସେଠାରେ ମଧ୍ୟ ଏହି ଚାପ କ୍ରୀଡା ଅନୁଷ୍ଠିତ ହୋଇଥାଏ । ଏହି ଋତୁରେ ସାବିତ୍ରୀ ବ୍ରତ ବିବାହିତା ସ୍ତ୍ରୀମାନେ ପାଳନ କରିଥାନ୍ତି । ଏତଦ୍ ବ୍ୟତୀତ ଅକ୍ଷୟ ତୃତୀୟା ଓ ମହାବିଷୁବ ସଂକ୍ରାନ୍ତି ମଧ୍ୟ ପାଳନ କରାଯାଇଥାଏ । ଏହି ପର୍ବମାନଙ୍କୁ ଆଧାର କରି ମୋର ଭାବନାକୁ ଲିପିବଦ୍ଧ କରିଛି କବିତାରେ ଯାହାକୁ ପାଠକ ମାନଙ୍କ ନିକଟରେ ଉପସ୍ଥାପନ କରୁଛି ।



## ଚନ୍ଦନ ଯାତ୍ରା

ଦ୍ୱାପର ଯୁଗରେ ବିରାଟ ନଗରେ
ପାଣ୍ଡବଙ୍କ ସହ ମିଳି ।
ଅଙ୍ଗେ ବୋଳି ବାସ ଶୀତଳ ଚନ୍ଦନ
କରିଥିଲ ନାବକେଳି ॥

ମନେପଡିଗଲା ସେ ଦିନର ସ୍ମୃତି
ହେଲା ଯେବେ ଗ୍ରୀଷ୍ମଦିନ ।
ଶ୍ରୀକ୍ଷେତ୍ରରେ ବସି କରିଦେଲ ପ୍ରଭୁ
ଚନ୍ଦନ ଯାତ୍ରା ଭିଆଣ ॥

ଅକ୍ଷୟ ତୃତୀୟା ତିଥିଠାରୁ ଏହି
ଯାତ୍ରା ହୁଅଇ ଆରମ୍ଭ ।
ନରେନ୍ଦ୍ର ଜଳରେ ନାବକ୍ରୀଡା କର
ଦେଖନ୍ତି ଭକତେ ସର୍ବ ॥

ସନ୍ଧ୍ୟାରେ ପବିତ୍ର ନରେନ୍ଦ୍ରର ଜଳ
ହୁଅଇ ଚଳ ଚଞ୍ଚଳ ।
ଚାପଖେଳ ଦେଖି ଭକତେ ଦିଅନ୍ତି
ହୁଳହୁଳୀ ହରିବୋଲ ॥

ମଦନମୋହନ ଲକ୍ଷ୍ମୀ ସରସ୍ୱତୀ
ବସିଥାନ୍ତି ଏକ ନାବେ ।
ଆନ ନାବେ ରାମକୃଷ୍ଣ ସଙ୍ଗେ ବିଜେ
କରିଥାନ୍ତି ପଞ୍ଚଶିବେ ॥

ଶ୍ରୀଅଙ୍ଗ ଶୀତଳ ହୋଇଗଲେ ପ୍ରଭୁ
ଫେରନ୍ତି ବଡଦେଉଳ ।
ଏକୋଇଶ ଦିନ ଯାଏ ଏହି ଭାବେ
ହୋଇଥାଏ ଚାପଖେଳ ॥



# ବିଶ୍ୱାସ ଏକ ସାବିତ୍ରୀର

ଯେଉଁଦିନ ତୁମ ନାମେ
ହାତେ ମୋର ପିନ୍ଧିଥିଲି
ଦୁଇ ପଟ ଶଙ୍ଖା ଆଉ
ଟୋପାଏ ସିନ୍ଦୂର,
ସେଇ ଦିନୁ ଭାବିନେଲି
ଏ ସାରା ଜନମ ପାଇଁ
ତୁମେ ମୋର ସତ୍ୟବାନ
ସାବିତ୍ରୀ ମୁଁ ତୁମର ॥

ତୁମଠାରେ ରଖିଛି ବିଶ୍ୱାସ ।
ରଖିଥିବି ଯେତେଦିନ
ଏ ଶରୀରେ ଚାଲିଥିବ
ନିଶ୍ୱାସ ପ୍ରଶ୍ୱାସ ॥

ପ୍ରଦୂଷିତ ଆଜି ଏ ସମାଜେ
ଭ୍ରଷ୍ଟାଚାରୀ, ଚୋର, ଖୁନୀ
ଧର୍ଷଣକାରୀ ବି
ସତ୍ୟବାନ ହୋଇ ବୁଲୁଛନ୍ତି ।

ସମସ୍ତେ ଚାହାନ୍ତି – ପତ୍ନୀ ତାଙ୍କ
ହୋଇଥିବ ସାବିତ୍ରୀଙ୍କ ପରି
ସୁନ୍ଦରୀ ଓ ସତୀ ॥

ହେଲେ ତୁମ ପ୍ରତି
ନାହିଁ ମୋର ପ୍ରଶ୍ନ ।
ରହିଛି ବିଶ୍ୱାସ ମନେ
ଯେତେ ଦିନ ବଞ୍ଚିଛି ମୁଁ
ତୁମେ ମୋର ବିଶ୍ୱାସର
ରଖିବ ସମ୍ମାନ ॥



ସମୟ କ୍ରମେ ଗ୍ରୀଷ୍ମଋତୁ ଧରାପୃଷ୍ଠରୁ ବିଦାୟ ନିଏ । ପହଲି ଆଷାଢରେ ଆକାଶରେ ମେଘଖଣ୍ଡ ମାନ ଭାସିବା ଦୃଶ୍ୟମାନ ହୁଅନ୍ତି । ଧରଣୀ ରାଣୀ ରଜସ୍ୱଳା ହୁଏ । ସମସ୍ତ ଗ୍ରାମ ପରି ମୋ ଗାଆଁରେ ମଧ୍ୟ ରଜପର୍ବ ପାଳନ ହୁଏ । ପିଲା ବେଳର ସ୍ମୃତି ଏବେ ବି ତାଜା ହୋଇଯାଉଛି । ସକାଳୁ ଉଠି ଗାଧୁଆ ପାଧୁଆ ସାରି ନୂଆ ପୋଷାକ ପିନ୍ଧି ପୋଡ଼ପିଠା ଖାଇ ଆମେ ସବୁ ସାଥୀମାନେ ଗୁଡି ଉଡିବାରେ ମଜ୍ଜି ଯାଉଥିଲୁ । ଏହାଛଡ଼ା ସେ ସମୟରେ ଗାଆଁର ବୟସ୍କ ବ୍ୟକ୍ତିମାନେ ଗାଆଁ ଦାଣ୍ଡରେ ବିଭିନ୍ନ ସ୍ଥାନରେ ବସି ପଶା ଓ ତାସ ଖେଳର ମଜ୍ଜା ନେଉଥିଲେ । ନଈ ବାଲିରେ ଗାଆଁ ଗାଆଁ ମଧ୍ୟରେ ବାଗୁଡି ଖେଳର ପ୍ରତିଯୋଗିତା ଅନୁଷ୍ଠିତ ହେଉଥିଲା । ସମସ୍ତେ ଏହାର ଆନନ୍ଦ ନେଉଥିଲେ । ଅବିବାହିତ ଝିଅମାନେ ଏହି ସମୟରେ ଏହି ପର୍ବକୁ ନିଷ୍ଠାର ସହିତ ପାଳନ କରୁଥିଲେ । ସେମାନେ ଖାଲି ଗୋଡ଼ରେ ଚାଲନ୍ତି ନାହିଁ । ଗାଆଁମୁଣ୍ଡ ବଡ଼ ବଡ଼ ଗଛ ମାନଙ୍କରେ ଦୋଳିରେ ଝୁଲିବାର ବ୍ୟବସ୍ଥା କରାଯାଇଥାଏ । ଝିଅମାନେ ଏହି ଦୋଳିଖେଳରେ ଆନନ୍ଦ ନେଉଥିଲେ । ଏହି ସମୟରେ ଝିଅମାନେ ଅନ୍ୟମାନଙ୍କ ଘରକୁ ବୁଲିଯାଉଥିଲେ । ପରସ୍ପର ମଧ୍ୟରେ ରଜପାନ ଆଦାନ ପ୍ରଦାନ କରୁଥିଲେ । ସମସ୍ତ ଘରେ ଆନନ୍ଦ ଉତ୍ସବର ପରିବେଶ ପାଞ୍ଚଦିନ ପର୍ଯ୍ୟନ୍ତ ଲାଗି ରହୁଥିଲା । ଶେଷ ଦିନ ବସୁମତୀ ସ୍ନାନ କଲା ପରେ ଏହି ପର୍ବର ସମାପ୍ତି ଘଟୁଥିଲା । ପୁନଶ୍ଚ ସମସ୍ତେ ନିଜ ନିଜ କାର୍ଯ୍ୟରେ ବ୍ୟସ୍ତ ହୋଇଯାଉଥିଲେ । ଆଜି କିନ୍ତୁ ଗ୍ରାମ୍ୟ ପରିବେଶ ସମ୍ପୂର୍ଣ୍ଣ ବଦଳି ଯାଇଛି । ଦୋଳି ବାନ୍ଧିବାକୁ ଗ୍ରାମରେ ଗଛ ବି ମିଳୁ ନାହିଁ । ପରିବାର ମାନଙ୍କ ମଧ୍ୟରେ ସୁସମ୍ପର୍କ ନାହିଁ । ଘର ଛାତରେ ଦୋଳି ବାନ୍ଧି ଘର ଭିତରେ ରହି ଦୋଳି ଖେଳୁଛନ୍ତି । ରଜ ସଂସ୍କୃତିକୁ ବଞ୍ଚାଇ ରଖିବା ଲାଗି ଆଜିକାଲି ରଜ ମହୋତ୍ସବ ସହର ମାନଙ୍କରେ ଅନୁଷ୍ଠିତ ହେଉଛି । ବୈଦ୍ୟୁତିକ ଗଣ ମାଧ୍ୟମମାନେ ବିଭିନ୍ନ କାର୍ଯ୍ୟକ୍ରମମାନ ଉପସ୍ଥାପନ କରୁଛନ୍ତି । ପ୍ରତିଯୋଗିତା ମାଧ୍ୟମରେ ରଜ କୁଇନ୍ ମନୋନୟନ କରୁଛନ୍ତି । କାଳକ୍ରମେ ଗ୍ରାମ୍ୟ ସଂସ୍କୃତି ଧୀରେ ଧୀରେ ଲୋପ ପାଇବାକୁ ଯାଉଛି ।

କ୍ରମେ ବର୍ଷାଋତୁ ତାର ଆସର ଜମାଏ । ଉତ୍ତପ୍ତ ପରିବେଶ ଶୀତଳ ଓ ଶାନ୍ତ ହୁଏ । ନଦୀ ନାଳ ଜଳରେ ପୂର୍ଣ୍ଣ ହୋଇଯାଏ । ନିଦାଘ ପ୍ରପୀଡିତ ବନରାଜି ପୁନଃ ସବୁଜିମାରେ ମଣ୍ଡିତ ହୁଏ । ଆଷାଢ ସହ ଶ୍ରାବଣ ମାସ ମଧ୍ୟ ବର୍ଷାଋତୁର ଅନ୍ତର୍ଭୁକ୍ତ । ରାକ୍ଷୀବନ୍ଧନ, ଗହ୍ମାପୂର୍ଣ୍ଣିମା ଆଦି ପର୍ବମାନ ମଧ୍ୟ ଏହି ସମୟରେ ପାଳିତ ହୁଏ ।

ବର୍ଷାଋତୁର ସ୍ୱାଗତ ଓ ଏହି ସମୟ ମଧ୍ୟରେ ପାଳିତ ହେଉଥିବା ପର୍ବ ପର୍ବାଣି ବିଷୟରେ ମୋ ମନରେ ଆସିଥିବା ଭାବନାକୁ କବିତାରେ ରୂପ ଦେବାକୁ ଚେଷ୍ଟା କରିଛି । ସେହି ପୃଷ୍ଠଭୂମି ଉପରେ ରଚିତ କେତୋଟି କବିତା ନିମ୍ନରେ ପ୍ରଦାନ କରୁଛି ।



## ରଜ

ବରଷକ ପରେ ଆସିଛିରେ ଆଜି ରଜ ।
ଗାଁ ଓ ସହରେ ଚାଲିଛିରେ ସଜବାଜ ॥
ଗାଁମାନେ ଆଜି ସହରାଭିମୁଖୀ
ଫିକା ପଡିଲାଣି ରଜ ।
ଆମ୍ବ-ବରଗଛ ମିଳୁନି ଗାଁରେ
ଦୋଳି ଟାଙ୍ଗିବାକୁ ଆଜ ॥

କବାଡ଼ି ବାଗୁଡି ତାସ ପଶାର
ଆସର ଜମୁନି ଆଜି ।
ସାଇବୁଲା ଆଉ ରଜପାନ ଭଙ୍ଗା
ଗଲାଣି ତ ଧୀରେ ହଜି ।।

ପରମ୍ପରାକୁ ବଞ୍ଚାଇବା ଲାଗି
ସହରେ ଚାଲେ ଉତ୍ସବ ।
କାଳକ୍ରମେ ବୋଧେ ହଜାଇ ବସିବା
ଆମେ ଏ ରଜ ଉତ୍ସବ ।।





## ସ୍ୱାଗତ ଆଷାଢ଼

ସରି ସରି ଆସେ ରଜ
ମା' ବସୁମତୀ ସ୍ନାନ କରିବାକୁ
ହୋଇଲେଣି ସଜବାଜ ।।

ଅସହ୍ୟ ଉଷ୍ଣତାରେ ଘର୍ମାକ୍ତ
ଏ ବସୁମତୀ ଅଙ୍ଗେ ମୌସୁମୀର
ଟିପି ଟିପି ବର୍ଷାର ଛନ୍ଦ ।
ସବୁରି ମନ ମୋହିନିଏ ଆଜି
ଭିଜାମାଟିର ଗନ୍ଧ ॥

ନିଦାଘର ରୁକ୍ଷ କର୍କଶ ଉତ୍ତାପେ
ଶୀର୍ଣ୍ଣ ନଦୀ ଗ୍ରାମ୍ୟ ପୁଷ୍କରିଣୀ ।
ପୂର୍ଣ୍ଣ ହେବ ଆଷାଢ଼ ବର୍ଷାରେ
ଉଚ୍ଛୁଳି ଉଠିବ ପାଣି ॥

ଉତ୍ତପ୍ତ ଏ ଧରା ଶୀତଳ ହୋଇବ
ପରିବେଶ ହେବ ଶାନ୍ତ ।
ସୁଷମା ମଣ୍ଡିତ ହେବ ଏ ପ୍ରକୃତି
ସବୁଜ ହୋଇବ କ୍ଷେତ ॥

ସରିଯାଏ ରଜ ସ୍ୱାଗତ ଆଷାଢ଼ଂ
ଆଜି ଏହି ଧରା ପରେ ।
ବର୍ଷିଯାଅ ତୁମ ଅମୃତ ବାରି
ଗାଇ ରିମ୍ ଝିମ୍ ସୁରେ ॥





## ସ୍ୱାଗତ ଶ୍ରାବଣ

ପୂର୍ବ ଦିଗରେ ଉଇଁଲେ ସୂରୁଜ
ପକାଇ ନାଲି ମୁରୁଜ ।
ଅସରା ମେଘର ପସରା ସଜାଡି
ଶ୍ରାବଣ ହୁଅଇ ସଜ ॥
ବିଦାୟ ନିଅଁଇ ଆଷାଢ଼ ଧରାରୁ
ଶ୍ରାବଣର କାନେ କହି ।
ବରଷି ଯିବାକୁ ରିମ୍ ଝିମ୍ ତାନେ
ଶୀତଳ ହୋଇବ ମହୀ ॥

ଗଛଲତା ଭରା ଏ ବଣ ପାହାଡେ
ସବୁଜିମା ଛାଇଯାଉ ।
କେଦାରେ ସବୁଜ ଶସ୍ୟ ଲହରୀ
ଦେଖି ଚାଷୀ ହସୁଥାଉ ॥



# ବର୍ଷା

ଘର୍ମାକ୍ତ ଏ ବସୁମତୀ ଅଙ୍ଗେ,
ଟିପି ଟିପି ପଦ ଛନ୍ଦେ,
ତୁମେ ଆସ ଆଦ୍ୟ ଆଷାଢରେ,
ମୋହିନିଅ ଭିଜାମାଟି ଗନ୍ଧେ ॥୧॥

ଗ୍ରୀଷ୍ମର ରୁକ୍ଷ କର୍କଶ ଉତ୍ତାପେ
ଶୀର୍ଣ୍ଣ ନଦୀ ପୁଷ୍କରିଣୀ
ପୁରିଉଠେ ଆଷାଢ଼ ବର୍ଷାରେ
ଉଛୁଳି ଉଠଇ ପାଣି ॥୨॥

ଉତ୍ତପ୍ତ ଏ ଧରା ଶୀତଳ ହୁଅଇ
ପରିବେଶ ହୁଏ ଶାନ୍ତ ।
ସୁଷମା ମଣ୍ଡିତ ହୁଏ ଏ ପ୍ରକୃତି
ସବୁଜ ହୁଅଇ କ୍ଷେତ ॥୩॥

ଗଛଲତା ଭରା ଏ ବଣ ପାହାଡେ
ସବୁଜିମା ଯାଏ ଛାଇ ।
କେଦାରେ ସବୁଜ ଶସ୍ୟ ଲହରୀ
ଦେଖି ଚାଷୀ ହସୁଥାଇ ॥୪॥

କମ୍ର ସବୁଜ ଘାସ ଗାଲିଚାରେ
ଟାଣି ତା ନାଲି ଓଢ଼ଣି
ଧୀରେ ଧୀରେ ଚାଲେ ସାଧବ ବୋହୂଟି
ଦେଖାଇ ସୁନ୍ଦର ଠାଣି ॥୫॥

ବେଙ୍ଗୁଲୀ ରାଣୀଟି ହୁଳହୁଳି ଦିଏ
ସାରୁବୁଦା ମୂଳେ ବସି
ସ୍ୱାଗତ କରଇ ତୁମ ଆଗମନେ
ଯିବାକୁ ଜଳ ବରଷି ।।୬।।

ବିଦାୟ ନିଅଇ ଆଷାଢ଼ ଧରାରୁ
ଶ୍ରାବଣର କାନେ କହି ।
ବରଷି ଯିବାକୁ ରିମ୍ ଝିମ୍ ତାନେ
ନଈନାଳ ଉଛୁଳାଇ ।।୭।।

ମୃତ ପ୍ରାୟ ନଦୀ ଜୀବନ୍ତ ହୁଅନ୍ତି
ବହନ୍ତି ପ୍ରଖର ବେଗେ ।
ଜୀବନର ସ୍ୱପ୍ନ ସାକାର କରନ୍ତି
ମିଳି ସାଗରର ସଙ୍ଗେ ।।୮।।

କିଆ ଓ କେତକୀ ଫୁଟି ଚହଟନ୍ତି
ମହକାଇ ପରିବେଶ ।
କାଉଡିଆ ଭାଇ ଜଳଭାର ଧରି
ଚାଲେ ଭୋଳାବାବା ପାଶ ।।୯।।

ସଙ୍ଗେ ଧରି ଆସ ଚିତାଲାଗି ଓଷା
ରାକ୍ଷୀ ଓ ଗହ୍ମା ଝୁଲଣ ।
ଗହ୍ମା ପୂର୍ଣ୍ଣମୀରେ ଝୁଲଣେ ଝୁଲନ୍ତି
ରାଧାଙ୍କ ସହ ମୋହନ ।।୧୦।।

ଲଘି ନଦୀ କୂଳ ବହିଯାଏ ଜଳ
ଉଜାଡ଼ି ଦିଏ ଫସଲ ।
ଭାସି ଯାଏ ଘର ପଶୁ ପକ୍ଷୀ ନର
ଦୁଃଖେ ହୋଇ କଲବଲ ॥୧୧॥

ତୁମ ଦ୍ରୁତ ପଦ ଧୀର ହୋଇଯାଏ
ଭୋଦୁଆ ଖରା ପଡ଼ିଲେ ।
ମେଘ ଖଣ୍ଡ ହୋଇ ଭାସୁଥାଅ ନଭେ
ଝରିପଡ ଇଚ୍ଛା ହେଲେ ॥୧୨॥

ଆଗମନେ ତୁମ ଭରିଦିଅ ଅଙ୍ଗେ
ମୃଦୁ ମନ୍ଦ ଶିହରଣ ।
ବିରହୀ ପ୍ରିୟାର ମନ ଖୋଜେ ପୁଣି
ପ୍ରିୟର ବାହୁ ବନ୍ଧନ ॥୧୩॥

ଅପସରି ଯାଅ ଧୀରେ ତୁମେ ଦେଖି
ଶିଶିର ଧରା ପୃଷ୍ଠରେ ।
ଚାହିଁ ରହୁ ତୁମ ଆସିବା ପଥକୁ
ପୁଣି ଆଦ୍ୟ ଆଷାଢ଼ରେ ॥୧୪॥



# ରାକ୍ଷୀ ବନ୍ଧନ

ଦାନବଙ୍କ ଭୟ ମନୁ କରିବାକୁ ଦୂର
ରକ୍ଷା କବଚ ସ୍ୱରୂପ ଦିବ୍ୟ ସୂତ୍ର ଏକ
ବାନ୍ଧିବାକୁ ଦେବେନ୍ଦ୍ରଙ୍କ ହସ୍ତେ,
ଦେଇଥିଲେ ଇନ୍ଦ୍ରାଣୀଙ୍କୁ ସ୍ୱୟଂ ନାରାୟଣ ।
ସହର୍ଷ ବଦନେ ଇନ୍ଦ୍ରାଣୀ ଇନ୍ଦ୍ରଙ୍କର ହସ୍ତେ,
ବାନ୍ଧି ସେଇ ଦିବ୍ୟ ରକ୍ଷାସୂତ୍ର,
ମନୁ ତାଙ୍କ ଦାନବଙ୍କ ଭୟ
ସବୁଦିନ ପାଇଁ କରିଥିଲେ ବିମୋଚନ ।
ଦାନବ ରାଜ ବଳି ସହ ଯୁଦ୍ଧେ,
ଇନ୍ଦ୍ରଙ୍କର ହୋଇଲା ବିଜୟ ॥

ଦ୍ୱାପରେ ଦିନେ ଦ୍ରୌପଦୀ ଶ୍ରୀକୃଷ୍ଣଙ୍କ ହସ୍ତେ
ସ୍ୱ ପଣତ ଚିରି ବାନ୍ଧିଥିଲେ ରକ୍ତସ୍ରାବ ସ୍ଥାନେ ।
ସେଦିନ ସେ ସ୍ୱତସ୍ଫୂର୍ତ୍ତ ଭାତୃ ପ୍ରେମ
ସ୍ୱାକ୍ଷର ସ୍ୱରୂପ- ସେ ଚିରା ପଣତ କାନି,
ରେଖାପାତ କରିଥିଲା ଶ୍ରୀକୃଷ୍ଣଙ୍କ ମନେ ।
ଦ୍ରୌପଦୀଙ୍କ ମାନ ରକ୍ଷା କରିଥିଲେ
ବିବସ୍ତ୍ରନ କାଳେ–କୁରୁପତି ସଭାସ୍ଥଳେ
ଟେକିଦେଇ ଅଦେଖା ହାତରୁ
ଅସରନ୍ତି ବସ୍ତ୍ର ପ୍ରତିଦାନେ ॥
ସେଇ ''ଦିବ୍ୟ ସୂତ୍ର'' ସେ ''ଚିରା ପଣତ କାନି''
ରାକ୍ଷୀ ନାମେ ପରିଚିତ ଆଜି ଘରେ ଘରେ
ଆମ ସଂସ୍କୃତିରେ ॥

ସେଥିପାଇଁ ଆଜି
ଭଉଣୀ ବାନ୍ଧଇ ରାକ୍ଷୀ– ଭାଇ ହାତେ,
ମୁଖେ ତା ଭୁଞ୍ଜାଇ ମିଷ୍ଟାନ୍ନ
ଲଗାଇ ତା ମଥାରେ ତିଳକ ।
ଆଉ ମାଗିଥାଏ
– ଅତୁଟ ରଖିବାକୁ ସବୁଦିନ ପାଇଁ
ଭାଇ ଓ ଭଉଣୀର ସେ ପବିତ୍ର ବନ୍ଧନ
– ରକ୍ଷା କରିବାକୁ
ତାର ଦମ୍ଭ, ମାନ ଓ ସମ୍ମାନ ॥

ଏ ''ରକ୍ଷା ବନ୍ଧନ'' କେବଳ
ଭାଇ ଓ ଭଉଣୀ ମଧ୍ୟେ ନୁହଁଇ ସୀମିତ ।
ଭୁଲି ଜାତି ଧର୍ମ ଭେଦ,
ଆସ ସର୍ବେ ପରସ୍ପର ହସ୍ତେ ବାନ୍ଧି
ଏ ପବିତ୍ର ରକ୍ଷା ସୂତ୍ର
ପରସ୍ପର ରକ୍ଷା ଲାଗି ନେବାରେ ଶପଥ ।
ରହିବନି ଘୃଣା ଦ୍ୱେଷ, ସୁଦୃଢ଼ ହେବ ସମାଜ
ସୁଦୃଢ଼ ହେବ ଭାରତ, ଜଗାଇ ସାରା ବିଶ୍ୱରେ
''ବସୁଧୈବ କୁଟୁମ୍ବକମ୍'' ମନ୍ତ୍ର ॥



ବର୍ଷା ଧୀରେ ଧୀରେ କମିଯାଏ । ଶରତ ଋତୁର ଆଗମନ ହୁଏ ସଙ୍ଗରେ ଭାଦ୍ରବ ଆଉ ଆଶ୍ୱିନ ମାସକୁ ଧରି । ଆକାଶ ନିର୍ମଳ । ମଝିରେ ମଝିରେ ଖଣ୍ଡେ ଖଣ୍ଡେ ଭସା ବାଦଲର ମନୋହର ଦୃଶ୍ୟ । ନଦୀ ଓ ପୁଷ୍କରିଣୀର ନିର୍ମଳ ଜଳ । ସାନ୍ଧ୍ୟ ଆକାଶରେ କଇଁଫୁଲିଆ ଜହ୍ନ ସାଙ୍ଗକୁ ଅଗଣିତ ତାରାମାନଙ୍କର ଦୃଶ୍ୟ ଅତ୍ୟନ୍ତ ମନ ମୁଗ୍ଧକର । ନଦୀ ପଠାରେ କାଶତଣ୍ଡୀ ରୂପର ପସରା ମେଲି ମଥାନତ କରି ମାଆ ଦୁର୍ଗାଙ୍କର ସ୍ୱାଗତ କରେ । ଏହି ସମୟରେ ମାଆ ଦୁର୍ଗାଙ୍କର ଧରାବତରଣ ହୋଇଥାଏ । ମାଆ ଦୁର୍ଗାଙ୍କର ପୂଜାର୍ଚ୍ଚନା ବହୁ ସମାରୋହରେ ପାଳନ କରାଯାଇଥାଏ । ଏଥି ସହିତ ଦଶହରା, କୁମାର ପୂର୍ଣ୍ଣିମା, ଖୁଦୁରୁକୁଣୀ ଆଦି ଓଷା ଓ ପର୍ବ ପାଳନ କରାଯାଇଥାଏ ॥ କ୍ଷେତରେ ସବୁଜ ଶସ୍ୟ ସୁଲୁସୁଲିଆ ପବନରେ ଲହରୀ ଭାଙ୍ଗେ । ଏହି ସମୟର ଦୃଶ୍ୟ ମନ ମଧ୍ୟରେ ଯେଉଁ କଳ୍ପନା ସୃଷ୍ଟି କରେ ତାକୁ ଲିପିବଦ୍ଧ କରିଛି କବିତା ରୂପରେ । ନିମ୍ନରେ ଉପସ୍ଥାପନା କରୁଛି ସେହି ସମ୍ବନ୍ଧୀୟ କେତୋଟି କବିତା ।



## କାଶତଣ୍ଡୀର ପ୍ରେମ

ରୂପର ପସରା ମେଲି ବସିଥିଲା
କାଶତଣ୍ଡୀ ନଦୀ ପଠାରେ ।
ଭସା ବାଦଲର ପ୍ରେମ ହୋଇଗଲା
ଯାଉ ଯାଉ ସେଇ ବାଟରେ ॥

କାଶତଣ୍ଡୀ କହେ ପରଦେଶୀ ବନ୍ଧୁ
ଯିବ ତୁମେ ଉଡି ଉଡିକି ।
କିମ୍ପାଇ ବାନ୍ଧିଲି ମନ ତୁମ ସହ
ଦେଖି ତୁମ ମିଛ ପ୍ରୀତିକି ।।

ଭସାମେଘ କହେ ଆଗୋ ପ୍ରିୟେ ମୋର
ପ୍ରେମ ଯେ ପବିତ୍ର ଅକ୍ଷୟ ଧାରା ।
ପ୍ରତି ଅଶିଣରେ ହୋଇବ ମିଳନ
ଯେତେଦିନ ରହିଥିବ ଏ ଧରା ।।

ସେଥିପାଇଁ କାଶତଣ୍ଡୀ ଅଶିଣରେ
ଶୃଙ୍ଗାର କରି ପ୍ରଣୟିନୀ ବେଶେ ।
ପ୍ରତୀକ୍ଷାରେ ଥାଏ ଭସାବାଦଲର
ଚାହିଁ ଅପଲକେ ନୀଳ ଆକାଶେ ।।



# ଜହ୍ନି ଫୁଲ ଠୋ ଠା

ସ୍ମୃତିପଟେ ଜାଗେ
ପଲାଦିନର ମୋ
ଛୋଟ ଗାଆଁଟିର
ଅଁଶିଣ ଗୋଧୂଳି ଲଗନ ।
ଚାଳଘର ପିଢ଼ା,
ବାରିର ବାଡରେ
କାକୁଡି ଓ ଜହ୍ନି
ଫୁଲର କି ଶୋଭା
ରୂପ ତା ହଳଦୀର ବର୍ଣ୍ଣ ।।

କୁଆଁରୀଙ୍କ ମନ
ଅତି ଛନ ଛନ
ସେ ଫୁଲକୁ ତୋଳି
ଆଣୁଥିଲେ ବଡ଼ ସରାଗେ ।
ଫିଙ୍ଗୁଥିଲେ ତାକୁ
ପିଢା ଉପରକୁ
ଗାଇ ଗାଇ ଗୀତ କିରଙ୍ଗେ ।।

ଗୀତ ଥିଲା ତାଙ୍କ–
"ଜହ୍ନୀଫୁଲ ଠୋ ଠା
କାକୁଡି ଫୁଲ ଠୋ ଠା
ଗୁଣ୍ଡୁଷି ମୂଷା କହି ଯାଇଛି
ଚାଉଳ ମୂଠେ ଥୋଇଥାଏ ।।

ସମୟ ସ୍ରୋତରେ
ଗାଆଁରେ ଦିଶେନି
ମାଟି ଘର ଚାଳ ଛପର ।
ବାରିର ବାଡରେ
ଫୁଟୁନାହିଁ ଆଉ
ଜହ୍ନି କି କାକୁଡିର ଫୁଲ ।।

ନୀଶିଥ ପ୍ରହରେ
ଗାଆଁ ମଝି ଦାଣ୍ଡେ
ମେଳିହୋଇ ସବୁ ତରୁଣୀ ।
ଗାଉ ନାହାନ୍ତି ସେ
ଶୁଭୁନାହିଁ ଆଉ
କୁଆଁର ପୁନେଇଁ
ଜହ୍ନଗୋ ଫୁଲ ବଉଳ ବେଣୀ ।।

ଗାଆଁର ସଂସ୍କୃତି ପରମ୍ପରା ସବୁ
ଯାଉଅଛି ଧୀରେ ବଦଳି ।
ଏତ ସମୟର–
ଦାନ ଏଥିପାଇଁ
କାହାକୁ କରିବା ଦାୟୀ
ଆଉ–
କା ସଙ୍ଗେ କରିବା କଳି ?



# ସ୍ୱାଗତ ଦୁର୍ଗେ

ଆସିଥିଲ ଦିନେ ମାତ
ସୁନ୍ଦର ଏ ଧରା ପରେ ।
ନାଶିଥିଲ ମହିଷାକୁ
ଅଚିରେ ନିଜ ହସ୍ତରେ ।। ୧ ।।

ବ୍ରହ୍ମାବରେ ବଳୀୟାନ
ଥିଲା ସେ ମହିଷାସୁର ।
ଦେବ କିମ୍ୱା ମାନବର ହସ୍ତେ
ହେବ ନାହିଁ ମୃତ୍ୟୁ ତାର ।। ୨ ।।

ଭୂଲୋକ ଦେବ ଲୋକରେ
ତା ଆତଙ୍କ ଅତ୍ୟାଚାରେ
ଆତଙ୍କିତ ଅସହାୟ
ଥିଲେ ସର୍ବ ଦେବତା ଓ ନରେ ।। ୩ ।।

ବ୍ରହ୍ମା ବରେ ନାରୀ ହସ୍ତେ
ମୃତ୍ୟୁ ପାଇଁ ନଥିଲା ବାରଣ ।
ତେଣୁ ମାତ ଦୁର୍ଗା ରୂପେ
ନେଇଥିଲ ମହିଷା ଜୀବନ ।। ୪ ।।

ଧର୍ମ ସଂସ୍ଥାପନ କରିଥିଲ
ପୁନଶ୍ଚ ଏ ଧରା ପରେ ।
ହୋଇଥିଲା ତୁମ ଜୟଗାନ
ଭୂଲୋକ ଦେବ ଲୋକରେ ।। ୫ ।।

ହେଲେ ସମୟ ଯାଇଛି ବହି
ଅନେକ ମହିଷାଙ୍କର କୋଳାହଳ ଏଠି ।
ଉତ୍ପାତ କରନ୍ତି ଆଜି କୋଣେ ଅନୁକୋଣେ
ଖାଆନ୍ତି ସର୍ବସ୍ୱ ଏ ଦେଶକୁ ଲୁଟି ।। ୬ ।।

ଚାଲେ ନାରୀ ନିର୍ଯାତନା
ପ୍ରତି କ୍ଷେତ୍ରେ ଅନ୍ୟାୟ ଓ ଭ୍ରଷ୍ଟାଚାର ।
କିଏ ଖାଏ ଖିରି ପୁରି
କିଏ ପାଏନି ତା ପେଟକୁ ଆହାର ॥ ୭ ॥

ଦିବାଲୋକେ–
ସର୍ବ ସମ୍ମୁଖରେ ହତ୍ୟା, ଗଣ ଧର୍ଷଣ, ଲୁଣ୍ଠନ ।
ନିତି ଦିନର ଘଟଣା
ନାହିଁ ଏଠି ଆଇନ କାନୁନ ॥ ୮ ॥

ତୁମ ଆଗମନୀ ବାର୍ତ୍ତା
ଗୁଞ୍ଜରଣେ ପୁଲକିତ ଆଜି ଧରା ।
ପ୍ରକୃତିର ଅଙ୍ଗେ ଅଙ୍ଗେ
କେତେ ଯେ ସୁଷମା ଭରା ॥ ୯ ॥

ଶେଷ ଅଶିଣରେ ନଭ
ମେଘ–ମୁକ୍ତ ଦିଶେ କେତେ ତୋରା ।
ସନ୍ଧ୍ୟାର ଆକାଶେ ଚନ୍ଦ୍ର ।
ଢାଳୁଅଛି ଜୋଛନାର ଧାରା ॥ ୧୦ ॥

ସୁଲୁ ସୁଲୁ ପବନରେ
ବାରମ୍ବାର କରି ମଥାନତ ।
ସ ସମ୍ମାନେ ଆଜି କାଶତଣ୍ଡୀ
କରଇ ତୁମ ସ୍ୱାଗତ ॥ ୧୧ ॥

ଆସ ମାତ ଦୁର୍ଗତି ନାଶିନୀ
ଆସ ଅବତରି ଧୀରେ ଏ ଧରା ଧାମରେ ।
ମହିଷାରୂପୀ କଳୁଷ
ସଂହାର କର ଅଚିରେ ॥ ୧୨ ॥



# ବିଜୟା ଦଶମୀ

ହେ ନୀଳାମ୍ବୁଜ ଶ୍ୟାମଳକୋମଳାଙ୍ଗ
ମର୍ଯ୍ୟାଦାପୁରୁଷୋତ୍ତମ ରାବଣାରୀ ରାମ ॥

କାଟି ଦଶ ଶିର ଖର୍ବ କଲ ତାର ଗର୍ବ
ସେଥିପାଇଁ ଆଜିର ଏ ବିଜୟ ପରବ ॥

ବିଜୟାଦଶମୀ ରୂପେ ହୁଅଇ ପାଳିତ
ହର୍ଷୋଲ୍ଲାସେ ତ୍ରିଭୁବନ ହୁଏ ମୁଖରିତ ॥

ଗୋଟିଏ ରାବଣ ପ୍ରଭୁ ମାରିଥିଲ କେବେ
କୋଟୀ ରାବଣଙ୍କ ଉତ୍ପାତ ଚାଲିଅଛି ଏବେ ॥

କେବେ ଶୁଣାଯିବ ତବ କୋଦଣ୍ଡ ଟଂକାର
କୋଟି କୋଟି ରାବଣଙ୍କୁ କରିବ ସଂହାର ॥



ମାଆ ଦୁର୍ଗାଙ୍କ ସହ ଶରତ ଋତୁ ମଧ୍ୟ ଧରାପୃଷ୍ଠରୁ ବିଦାୟ ନିଏ । ଆରମ୍ଭ ହୁଏ ହେମନ୍ତ ଋତୁ । କମ୍ର ସବୁଜ ଘାସ ଗାଲିଚା ଉପରେ ଶିଶିର ମୁକ୍ତାସବୁ ସକାଳର ସୁନା ସୋରିଷିଆ ଖରାରେ ଚିକ୍ ଚିକ୍ କରନ୍ତି । କାର୍ତ୍ତିକ ଓ ମାର୍ଗଶୀର ମାସ ଏହି ଋତୁର ଅନ୍ତର୍ଭୁକ୍ତ । କାର୍ତ୍ତିକ ମାସକୁ ଧର୍ମମାସ ରୂପେ ନିଆଯାଇଛି । ବ୍ରାହ୍ମ ମୁହୂର୍ତ୍ତରୁ ଉଠି ଲୋକମାନେ ସ୍ନାନ ସମାପନ ପୂର୍ବକ ମନ୍ଦିର ଯାଇ ଭଗବାନଙ୍କର ଦର୍ଶନ କରିଥାନ୍ତି । ଏହି ସମୟରେ ଦୀପାବଳି ଓ ବଡ଼ବଡୁଆ ଡକା ପାଳନ କରାଯାଇଥାଏ । ଆଜିକାଲି ଗାଆଁ ମାନଙ୍କରେ ଯେପରି ଭାବରେ ଆଲୋକମାଳାର ସାଜସଜ୍ଜା ସହ ଆତସବାଜିର ଖେଳ ଚାଲୁଛି, ମୋର ବାଲ୍ୟକାଳରେ ଗାଆଁରେ ସେପରି ଭାବରେ ଏ ସବୁ ହେଉ ନଥିଲା । ବଡ଼ବଡୁଆ ଡକା ହିଁ ହେଉଥିଲା । ଏହାଛଡ଼ା କାର୍ତ୍ତିକ ମାସରେ ବିଧବା ବ୍ରାହ୍ମଣୀମାନେ ହବିଷ ବ୍ରତ ପାଳନ କରୁଥିଲେ । ଗ୍ରାମ ମାନଙ୍କରେ ରାଧାକୃଷ୍ଣଙ୍କର ଶରତ ରାସ ପାଳନ ଏହି ସମୟରେ ହୁଏ । ଆମ ଗ୍ରାମରେ ମଧ୍ୟ ଏହି ରାସୋତ୍ସବ ପାଳନ ହୋଇଆସୁଅଛି । କାର୍ତ୍ତିକ ପୂର୍ଣ୍ଣିମା ଅବସରରେ ସକାଳୁ ସକାଳୁ ନଦୀ କିମ୍ବା ପୁଷ୍କରିଣୀକୁ ଯାଇ କଦଳୀ ବାସୁଙ୍ଗୀ ବା ସୋଲରେ ତିଆରି ଡଙ୍ଗାମାନ ଭସାଇଥାନ୍ତି । ଅତୀତରେ ଓଡ଼ିଆ ସାଧବ ପୁଅମାନଙ୍କର ବୋଇତ ନେଇ ସୁଦୂର ଜାଭା, ସୁମାତ୍ରା ଆଦି ଦ୍ୱୀପମାନଙ୍କୁ ବାଣିଜ୍ୟ କରି ଯାଉଥିବାର ସ୍ମୃତିକୁ ଉଜାଗର କରିଥାଏ । ମାର୍ଗଶୀର ଅଧାଅଧି ହେଲାବେଳକୁ ଅଳ୍ପ ଅଳ୍ପ ଶୀତ ଅନୁଭୂତ ହୁଏ । ଧାନ କ୍ଷେତରେ ଧାନ ପାଚିବା ଆରମ୍ଭ ହୁଏ । ଶସ୍ୟ କ୍ଷେତରେ ସୁନାର ଫସଲ ଦେଖି ଚାଷୀଭାଇର ମନ ଆନନ୍ଦରେ ପୁରି ଉଠେ । ପ୍ରତି ଘରେ ଗୁରୁବାର ଦିନ ମାଆ ଲକ୍ଷ୍ମୀଙ୍କର ପୂଜାର୍ଚ୍ଚନା କରାଯାଏ । ଏହି ସବୁ ପର୍ବ ପର୍ବାଣି ମୋ ମନରେ ଯେଉଁ ଭାବନା ସୃଷ୍ଟି କରିଛି ମୁଁ ତାକୁ କିଛି ମାତ୍ରାରେ କବିତାରେ ରୂପ ଦେଇଛି । ସେଇ କବିତା ଗୁଡିକୁ ନିମ୍ନରେ ପ୍ରଦାନ କରାଯାଇଛି ।

## ଦୀପାବଳି

ଘନ ତମିସ୍ରାର ରଜନୀ ଲାଗଇ
ପୂର୍ଣ୍ଣମୀ ରାତ୍ରିଠୁ ବଳି ।
ସତେ ଅବା ତାରା ଫୁଲ ଯେତେ ସବୁ
ଆକାଶରୁ ଝସି ଆସିଛନ୍ତି ଆଜି
ପୃଥିବୀ ପୃଷ୍ଠକୁ ବୁଲି ॥

ଝଲସି ଉଠୁଛି ଦୀପମାଳା ସହ
ବିଦ୍ୟୁତ୍ ଆଲୋକେ ପ୍ରତି ଅନୁଷ୍ଠାନ
କୁଟୀର ଅବା ପ୍ରାସାଦ ।
ଫୁଲଝରୀ ଆଉ ଆତସବାଜିର
ଖେଳେ ପିଲାମାନେ ନେଉ ଅଛନ୍ତି ଆନନ୍ଦ ।।
ନାନା ରଙ୍ଗେ ଘର ଶୋଭା ପାଉଅଛି
ଆଲୋକମାଳାରେ ପୂର୍ଣ୍ଣ ।
ସାରା ଗ୍ରାମ ଅବା ସହର ଦିଶଇ
ନବବଧୂ କେହି ପିନ୍ଧିଅଛି ଅଙ୍ଗେ
ସୁନା, ହୀରା, ନୀଳା, ମୋତି ମାଣିକ୍ୟରେ
ନାନା ବିଧ ଆଭୂଷଣ ।।

ରାମାୟଣ କହେ–
ଚଉଦ ବରଷ ବନବାସ ଅନ୍ତେ
ଫେରିଥିଲେ ରାମ ସୀତା ଓ ଲକ୍ଷ୍ମଣ
ଅଯୋଧ୍ୟାକୁ ଏହି ଦିନ
ଆଲୋକ ମାଳାରେ ସଜ୍ଜିତ ଅଯୋଧ୍ୟା
ନଗରୀର ଦ୍ୱାର–ଦେଶେ ଶୋଭୁଥିଲା
ସୁଦୃଶ୍ୟ ତୋରଣ ମାନ ।।

ପ୍ରତି ଘର ଦ୍ୱାର ମୁହେଁ ଶୋଭୁଥିଲା
ରମ୍ଭା ବୃକ୍ଷ ସହ ଶୁଭ୍ର ଧାନ୍ୟ ପରେ
ମଙ୍ଗଳ କଳସୀ ମାନ ।
ସାରା ନଗରୀରେ ଗୁଞ୍ଜରୁ ଥିଲା
ସ୍ୱାଗତ ଗୀତିକା ସହିତ ମଙ୍ଗଳଗାନ ।।

ସେଦିନର ସେହି ଅପୂର୍ବ ସ୍ମୃତିକୁ
ଉଜ୍ଜୀବିତ କରି ଆଜି ଦେଶବାସୀ ସର୍ବ
ମହା ଆଡମ୍ବରେ ପାଳନ କରନ୍ତି
"ଦୀପାବଳି" ନାମେ
ଆଲୋକର ଏହି ପର୍ବ ।।

ଦେଶର ବିଭିନ୍ନ ପ୍ରାନ୍ତରେ ପାଳିତ
ହୁଏ ଏହି ପର୍ବ ଭିନ୍ନ ପରମ୍ପରା ନେଇ ।
ଉତ୍କଳେ "ପିପେଇ ଡକା" ନାମେ
ଏହି ପର୍ବ ପାଳିତ ହୁଅଇ ।।

କାଉଁରିଆ କାଠି ଜଳାଇ
ଊର୍ଦ୍ଧ୍ୱକୁ ଟେକି ଦୁଇ ହସ୍ତେ
ପିତୃ ପୁରୁଷଙ୍କୁ କରିଥାନ୍ତି ଆବାହନ
ବିଦାୟ ଦିଅନ୍ତି ଆଲୋକ ଦେଖାଇ
ଯିବା ପାଇଁ ଗଙ୍ଗା ଗୟା ଅବଶେଷେ
ପୁରୁଷୋତ୍ତମ ସ୍ଥାନ ।

କେତେ ଅଞ୍ଚଳରେ ପ୍ରତି ଗୃହେ ହୁଏ
ଲକ୍ଷ୍ମୀ ମାତାଙ୍କ ପୂଜନ
ମନରେ ବିଶ୍ୱାସ ମାତା ଲକ୍ଷ୍ମୀ ଯଦି
ହୋଇବେ ପ୍ରସନ୍ନ ମିଳିଥାଏ ଧନ ରତ୍ନ ।।

ବହୁ ଅନେକତା ମଧ୍ୟରେ ଏକତା
ଏ ଦେଶେ ଆମର ସୁଦୃଢ଼ ଆମ ସଂସ୍କୃତି
ଦୀପାବଳିର ଏ ପବିତ୍ର ତିଥିରେ
ଦେଶବାସୀ ସର୍ବେ ରୁହନ୍ତୁ ଖୁସିରେ
ହେଉ ଦେଶର ଉନ୍ନତି ।।



# ବଡ଼ ବଡୁଆ

ସୁସ୍ୱାଗତ ଦୀପାବଳି ।
ପିତୃପୁରୁଷଙ୍କୁ ଆବାହନ କରୁ
କାହୁଁରିଆ କାଠି ଜାଳି ॥

ଅମାବାସ୍ୟାର ଘନ ଅନ୍ଧାରେ ଆସ ।
ଆଲୋକରେ ତମେ ଯାଅ ।
ଗଙ୍ଗା ଯାଅ ଗୟା ଯାଅ
ଶ୍ରୀପୁରୁଷୋତ୍ତମ ଯାଅ ।
ବାଇଶି ପାହାଚେ କୈବଲ୍ୟ ଖାଇ
ଅମୃତ ଦୃଷ୍ଟିରେ ଚାହଁ ॥



# ଶରତ ରାସ

ଦେବକୀ ହୃଦ ଚନ୍ଦନ ବସୁଦେବଙ୍କ ନନ୍ଦନ
ଯଶୋଦାର ଗଳାମାଳ ନନ୍ଦ ଦୁଲାଳ ।
ଜନମି ମଥୁରାପୁରେ ଆସିଲୁ ଗୋପ ନଗରେ
ଗୋପେ ଗୋପାଳୁଣୀ ତୋର ପ୍ରେମେ ପାଗଳ ।
ବୃଷଭାନୁ ସୁତା ରାଧିକା
ତୋ ପ୍ରେମେ ପାଗଳୀ ସବୁଠାରୁ ଅଧିକା ॥
ଶୁଣି ତୋ ବଇଁଶୀ ସ୍ୱନ ଧାଇଁଯାଏ ମଧୁବନ
ସଙ୍ଗେ ଧରି ସଖୀ ବିଶାଖା ଓ ଲଳିତା ।
ହୋଇ ମଧୁବନେ ମେଳି ତୋ ସଙ୍ଗେ ରଚାନ୍ତି କେଳି
ବିତାନ୍ତି ସାରା ରଜନୀ ନକରି ଚିନ୍ତା ।
କି ମାୟା ତୁ କରୁରେ କାହ୍ନା
ତୋ ପ୍ରେମେ ବ୍ରଜ ଗୋପୀକା ହୁଅନ୍ତି ବଶ ॥



# କି ଥିଲା କି ହେଲା

ଜୋଛନା ଭିଜା ସେ ରାତି
ଚାଲିଥିଲା ଚୋରା ପ୍ରୀତି ।।
ଶୁଭୁଥିଲା ବଂଶୀ ସ୍ୱନ
ରାଧିକା ସଙ୍ଗେ ମୋହନ ।।
ଯମୁନା ନଦୀର କୂଳେ
ବସି କଦମ୍ବର ମୂଳେ ।।
ପ୍ରେମାଳପେ ଥିଲେ ମଜ୍ଜି
ପ୍ରୀତି ଜୋଛନାରେ ଭିଜି ।।
ରାଧିକାଙ୍କ ପ୍ରାଣ କାହ୍ନା
ନ ଥିଲା ମନେ ବାସନା ।।
ପାହି ଯାଉଥିଲା ରାତି
ନ ଥିଲା ମନରେ ଭୀତି ।।
ଥିଲା ତାହା ଦିବ୍ୟ ପ୍ରେମ
କହେ ଆଜି ଚାରି ଧାମ ।।
ସେକାଳ ଯାଇଛି ବିତି
ଚାଲିଛି ଚୋରା ପୀରତି ।।
ବଦଳି ଯାଇଛି ମନ
କାମ ବାସନାରେ ପୂର୍ଣ୍ଣ ।।
ବାସନା ନହେଲେ ପୂର୍ତ୍ତି
ଭୟଙ୍କର ପରିଣତି ।।
ଘଟୁଅଛି ଏ ସଂସାରେ
ଅଛପା ନାହିଁ କାହାରେ ।।
ପ୍ରେମ ସେ ପବିତ୍ର ନାମ
ହରାଇଛି ତାର ଧର୍ମ ।।
ପ୍ରେମ କର ନାହିଁ ବାଧା
ପ୍ରେମ ଧର୍ମ ହେଉ ଶ୍ରଦ୍ଧା ।।



# ମହାଲକ୍ଷ୍ମୀ ବନ୍ଦନା

ହେ ବିଷ୍ଣୁପ୍ରିୟା ହେ ସାଗରସୁତା
ହେ ମହାମାୟୀ ହେ ସୁରପୂଜିତା ।।

ହେ ପଦ୍ମାସୀନା ହେ ସର୍ବଦୁଃଖହାରୀ
ସିଦ୍ଧିପ୍ରଦାୟିନୀ ଆଦ୍ୟା ଶକ୍ତି ମହେଶ୍ୱରୀ ।।

ହେ ଜଗତମାତା ପରଂବ୍ରହ୍ମ ସ୍ୱରୂପିଣୀ
ନମସ୍ତେ ନମସ୍ତେ ମହାଲକ୍ଷ୍ମୀ ଠାକୁରାଣୀ ।।



ଶିଶିରର ଅନ୍ତେ ଶୀତ ଋତୁ ଧରାପୃଷ୍ଠରେ ନିଜର ଆଧିପତ୍ୟ ବିସ୍ତାର କରେ । ବୃକ୍ଷମାନେ ପତ୍ରଝଡ଼ା ଦେଇ ରୁକ୍ଷ ଦିଶନ୍ତି । ଚାଷୀଭାଇ ଶୀତଦିନିଆ ରବି ଫସଲ ଓ ଧାନ କଟାକଟିରେ ବ୍ୟସ୍ତ ରହେ । ପୌଷ ଓ ମାଘ ମାସରେ ଶୀତର ପ୍ରକୋପ ବଢ଼ିଥାଏ । ଶୀତ ବସ୍ତ୍ର ଅଭାବରେ ଗରିବ ବାସହୀନ ଲୋକ ବହୁ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ଗାଆଁ ମାନଙ୍କରେ ଗରିବ ଘରର ବୃଦ୍ଧ ଓ ବୃଦ୍ଧାମାନେ ଶୀତ ସହ୍ୟ କରି ନପାରି ମୃତ୍ୟୁବରଣ କରିଥାନ୍ତି । ଶୀତ ଋତୁରେ ମାଆ ସରସ୍ୱତୀଙ୍କ ପୂଜା କରାଯାଇଥାଏ । ମାଘ ପୂର୍ଣ୍ଣମୀ ଦିନ ଅଗ୍ନିଉତ୍ସବ ପାଳନ କରାଯାଇଥାଏ । ଗାଆଁର ଏହି ସମୟର ଘଟଣା ଓ ଦୃଶ୍ୟ ମୋ ମନରେ ଯେଉଁ ଛାପ ଛାଡ଼ି ଯାଇଛି ତାକୁ ନିଜର କବିତାରେ ରୂପ ଦେବାକୁ ଚେଷ୍ଟା କରିଛି । ଏହି କେତୋଟି ସେହି ସମ୍ବନ୍ଧୀୟ କବିତା ଉପସ୍ଥାପନ କରୁଛି ଆପଣମାନଙ୍କ ପାଇଁ ।



# ଶୀତ

ତୁମ ଆଗମନେ ରୋମାଞ୍ଚିତ ହୋଇ
ଦେହ ମୋ ଶୀତେଇ ଯାଏ
କମ୍ବଳ ରେଜେଇ ଦୀର୍ଘ ନିଦ୍ରା ତେଜି
ଉଷ୍ମ ଆଲିଙ୍ଗନ ଦିଏ ॥ ୧ ॥

ସକାଳ ସୂର୍ଯ୍ୟର ସୁନେଲି କିରଣ
ଧରା ଆଗମନ କାଳେ
ଶରତ ଶିଶିର ଅପସରି ଯାଏ
ଘନ କୁହ୍ଡିକା ଖେଳେ ॥ ୨ ॥

ସବୁଜ ଶସ୍ୟ କ୍ଷେତ ଜାଣି ତୁମ
ଯଥାକାଳ ଆଗମନୀ
ସବୁଜ ପାଟ ତା ବଦଳାଇ ଦେଇ
ପିନ୍ଧିଛି ପୀତ ପତନି ॥ ୩ ॥

ହସୁଛି ସେବତୀ ଡ଼ାଲିଆ ଗୋଲାପ
ବଢାଇ ଉଦ୍ୟାନ ଶୋଭା
ଭ୍ରମନ୍ତି ଭ୍ରମରେ ଗୁଣୁ ଗୁଣୁ ତାନେ
ଦୃଶ୍ୟ ଅତି ମନ ଲୋଭା ।। ୪ ।।

ହଳଦୀ ବର୍ଣ୍ଣର ସୋରିଷ ଫୁଲର
ଅପରୂପ କାନ୍ତି ଦେଖି
ରାଗେ ଜର ଜର ହଳଦୀ ବସନ୍ତ
ବୁଜି ଦେଇଛି ତା ଆଖି ।। ୫ ।।

କୋବି ବାଇଗଣ ପିଆଜ ରସୁଣ
ଧନିଆ କୋଶଳା ମୂଳା
ବଜାର ହାଟରେ ବିକା କିଣା ଲାଗି
ବେପାରୀମାନଙ୍କ ମେଳା ।। ୬ ।।

ଶୀତୁଆ ପବନେ ରୁକ୍ଷ ହୋଇ ବୃକ୍ଷ
ପତ୍ର ସବୁ ଦେଇ ଝାଡ଼ି
ଅପେକ୍ଷା କରନ୍ତି ପଲ୍ଲବିତ ହେବେ
ଶୀତ ଯେବେ ଯିବ ଛାଡ଼ି ।। ୭ ।।

ମାଆ ଲକ୍ଷ୍ମୀଙ୍କର ଆଗମନ ପାଇଁ
ଗୃହିଣୀ ଆନନ୍ଦ ମନ
ଝୋଟି ଚିତା ଲେଖି ସ୍ୱାଗତ କରିବେ
ମନସ୍କାମ ହେବ ପୂର୍ଣ୍ଣ ।। ୮ ।।

ପଉଷ ପୂର୍ଣ୍ଣମୀ ଅଗ୍ନି ଉତ୍ସବାଦି
ଶୀତ ଦିନିଆ ପରବ
ଆନନ୍ଦ ଉଲ୍ଲାସେ ପାଳନ କରିବେ
ଭୁଲି ଜାତି ଭେଦ ଭାବ ॥ ୯ ॥

କିଏ କାଟେ ନିଶି ପ୍ରିୟା ସହ ମିଶି
ରେଜେଇ କମ୍ବଳ ତଳେ
କିଏ ବିରହରେ ରାତ୍ରି ଉଜାଗରେ
ନୟନୁ ଲୋତକ ଢାଳେ ॥ ୧୦ ॥

କିଏ ବାସହୀନ ଭୋଗଇ କଷଣ
ଖୋଜଇ ଆଶ୍ରୟ ସ୍ଥଳ
କିଏ ସାହା ହେବ ସ୍ୱାର୍ଥୀ ଦୁନିଆରେ
ହୀନ ତାହର କପାଳ ॥ ୧୧ ॥

କାହା ପାଇଁ ତୁମେ ପୁଷ ମାସ ପୁଣି
କାହା ପାଇଁ ସର୍ବ ନାଶ
ତୁମ ଆଗମନେ କିଏ ପାଏ ଦୁଃଖ
କିଏ ହୁଅଇ ହରଷ ॥ ୧୨ ॥

ଋତୁଚକ୍ରେ ତୁମ ଅବସ୍ଥିତି ସଦା
ପ୍ରକୃତି ମଙ୍ଗଳ ପାଇଁ
ଯଥା ସମୟରେ ଆସିବା ପାଇଁକି
କେବେ ବି ଭୁଲିବ ନାହିଁ ॥ ୧୩ ॥



# ବୃଦ୍ଧା ଉଠିଲା ନାହିଁ

ଥିଲା ସେ ପଉଷ
ହାଡଭଙ୍ଗା ଶୀତ ରାତି ।
ଖଣ୍ଡିଆ ମସିଣା ଅର୍ଦ୍ଧେକରେ ଶୋଇ
ଆଉ ଅର୍ଦ୍ଧେକକୁ ଘୋଡ଼େଇ ଥିଲା ତା
ଜୀର୍ଣ୍ଣ ଦେହ ମୁଣ୍ଡ ଛାତି ।।

ଜୀବନର ପଥେ ଚାଲିବା ପାଇଁକି
ଧରିଥିଲା ଯାର ହାତ ।
ଅଧା ବାଟରେ ସେ ହାତ ଛାଡ଼ି ଦେଇ
ହୋଇଗଲା ଦିବଂଗତ ।।

ପଞ୍ଚପୁତ୍ରର ଜନନୀ ବୋଲି ସେ
କରୁଥିଲା ମନେ ଗର୍ବ ।
ହେଲେ ଅସହାୟା ନିସଙ୍ଗ ସେ ଆଜି
ହଜାଇଛି ସବୁ ଦମ୍ଭ ।।

ଜୀବନ ଯାତ୍ରାର ଅନ୍ତିମ ପାହାଚେ
ବୃଦ୍ଧା ଥିଲା ଉପନୀତ ।
ଥରିଲା କଣ୍ଠୁ ତା ଶୁଭୁଥିଲା କିଛି
ଗୁଣୁ ଗୁଣୁ ସ୍ୱର ଅବୁଝା ଆଉ ଅସ୍ପଷ୍ଟ ।।

ଭାବୁଥିଲା ବୃଦ୍ଧା ରାତିଟା କିପରି
ଶୀଘ୍ର ଯାଆନ୍ତା ପାହି ।
ସକାଳ ସୁରୁଜ କିରଣରେ
ଶୋଇ ଯାଆନ୍ତା ପିଠି ଦେଖାଇ ॥

ରାତିର ବାକିଆ ନିଦଟାକୁ ପୁରା
କରନ୍ତା ଖରାରେ ଶୋଇ ।
ସକାଳ ଆସିଲା ସୂରୁଜ ଉଠିଲା
ବୃଦ୍ଧା ଉଠିଲା ନାହିଁ ॥



## ସରସ୍ୱତୀ ବନ୍ଦନା

ଶ୍ୱେତପଦ୍ମାସନୀ ମରାଳବାହିନୀ
ସମସ୍ତ ଦେବ ବନ୍ଦିତା
ଶୁକ୍ଳାମ୍ବରୀ ବୀଣାପୁସ୍ତକଧାରିଣୀ
ବୁଦ୍ଧିପ୍ରଦା ଜଗନ୍ମାତା ॥

ଅଜ୍ଞାନ ତିମିର ଦୂର କର ମାତେ
ଖୋଲିଦିଅ ଜ୍ଞାନ ଦ୍ୱାର
ବାଗ୍‌ଦେବୀ ଭାରତୀ ମାତା ସରସ୍ୱତୀ
ଘେନ ପ୍ରଣତି ମୋହର ॥



ଗାଆଁର ସଂସ୍କୃତି ଧୀରେ ଧୀରେ ବଦଳିବାରେ ଲାଗିଛି । ମୋ ବୟସର ସମସ୍ତ ବ୍ୟକ୍ତିମାନେ ଏହା ଭଲ ଭାବେ ଜାଣିଥିବେ ଯେ ଗାଆଁ ମାନଙ୍କରେ ପର୍ବପର୍ବାଣି କିମ୍ବା ବିବାହ ବ୍ରତ ଉତ୍ସବ ପୂର୍ବରୁ ଘର ଦ୍ୱାର ସଫାସୁତର କରାଯାଉଥିଲା । ମାଟି କାନ୍ଥକୁ ବନମାଟି ଦେଇ ଲିପାପୋଛା କରାଯାଇ କାନ୍ଥମାନଙ୍କରେ ଝୋଟି ଲେଖା ଯାଉଥିଲା । କାଳକ୍ରମେ ମାଟିଘର ପରିବର୍ତ୍ତେ କୋଠାଘରମାନ ହେବାରୁ ଆଉ ଲିପାପୋଛାର ଆବଶ୍ୟକତା ପଡୁନାହିଁ କି ଝୋଟି ବା ଚିତା ଦେଖିବାକୁ ମିଳୁନାହିଁ । ଏହି ପରିପ୍ରେକ୍ଷୀରେ ମୋ ମନରେ ଆସିଥିବା ଭାବନାକୁ କବିତାରେ ଲିପିବଦ୍ଧ କରିଛି ଯାହାକି ନିମ୍ନରେ ପ୍ରଦାନ କରୁଛି ।



## ବନମାଟି

ମନେପଡ଼େ ଆଜି
ପିଲାଦିନର ସେ
କାଦୁଅ ମାଟିର କାନ୍ଥ ଉପରେ
ଚାଳ ଛପରର ଘର ।
କେତେ ଯତନରେ
ଲିପାପୋଛା କରି ଘରର ଘରଣୀ
ରଖୁଥିଲା ପରିଷ୍କାର ॥

ମଲା ମୃତିକିଆ ପରବ ପର୍ବାଣି
ପଡୁଥିଲା ଯେତେବେଳେ ।
ସବୁ ଘର କାନ୍ଥ ଅଗଣା ଦୁଆର
ଲିପା ପୋଛା ଏକାବେଳେ ।।

ଲିପା ପୋଛା ପାଇଁ ବନମାଟିର ଯେ
ରହିଥିଲା ଦରକାର ।
ବନମାଟି ଦେଇ ନ ଲିପିଲେ ଘର
ଦିଶୁଥିଲା ଅସୁନ୍ଦର ।।

ବରଷକ ପାଇଁ ପ୍ରତି ପରିବାର
ରଖୁଥିଲେ ବନମାଟି ।
ସେ ମାଟିରେ ଲିପି ଚାଉଳ ଆଣରେ
ଲେଖୁଥିଲେ ଚିତା ଝୋଟି ।।
ସାବୁନ ଓ ସାମ୍ପୋ ସେତେବେଳ କାଳେ
ମିଳୁ ନଥିଲା ଗାଁରେ ।
ଦେହ ମୁଣ୍ଡ ସଫା କରିବା ପାଇଁକି
ନିର୍ଭର ବନମାଟିରେ ।।

ଘର ପଛପଟେ କାନ୍ଥକୁ ଲଗାଇ
ରଖୁଥିଲେ ଯେ ଗଦେଇ ।
ଦରକାର ବେଳେ ନେଉଥିଲେ ସେଠୁ
ଘର ଦ୍ୱାର ଲିପା ପାଇଁ ।।

ଆଜିକାଲି ସବୁ ବଦଳିଗଲାଣି
ନାହିଁ ଆଉ ମାଟି ଘର ।
ଛାତଘର ଆଉ ସିମେଣ୍ଟ କାନ୍ଥରେ
ଲିପା ନାହିଁ ଦରକାର ।।

ସାବୁନ ଓ ସାମ୍ପୋ ଲଗାନ୍ତି ସମସ୍ତେ
ଦେହ ମୁଣ୍ଡ ସଫା ପାଇଁ ।
ବନମାଟି କଥା କିଏସେ ପଚାରେ
ଜାଣନ୍ତିନି କ'ଣ ସେହି ।।



ଗାଆଁର ଚଳଣି ପୂର୍ବାପେକ୍ଷା ବହୁ ଭାବରେ ପରିବର୍ତ୍ତିତ । ସମୟକ୍ରମେ ପ୍ରସାଧନୀ ସାମଗ୍ରୀର ପରିବର୍ତ୍ତନ ଘଟିଛି । ମନେପଡେ଼ ପିଲା ଥିଲା ବେଳେ ଖରାଦିନେ ଘର ଅଗଣାରେ ବୁଢ଼ୀମା ସପ କିମ୍ବା ମସିଣା ପକାଇ ଆମକୁ ହଳଦୀ ଲଗାଇ ଦେଉଥିଲେ । ହଳଦୀ ଲଗାଇଲେ ଦେହ ଥଣ୍ଡା ଲାଗୁଥିଲା ଆଉ ରାତିରେ ନିଦ ବି ଭଲ ହେଉଥିଲା । ମଶାମାନଙ୍କ ଉପଦ୍ରବରୁ ମଧ୍ୟ ରକ୍ଷା ମିଳୁଥିଲା । ଏବେ ହଳଦୀ କାଠୁଆ ଓ ହଳଦୀକୁ ସମସ୍ତେ ଭୁଲିଗଲେଣି । ଏହି ହଳଦୀ କାଠୁଆ ଓ ହଳଦୀକୁ ନେଇ ମୋର ଭାବନାକୁ କବିତା ରୂପରେ ଉପସ୍ଥାପନ କରୁଛି ।

## ଜେଜେମା ଓ ହଳଦୀ କାଠୁଆ

ମନେପଡ଼େ ପିଲାବେଳ ।
ଜେଜେ-ମାଆଙ୍କର ହଳଦୀ କାଠୁଆ
ସାଙ୍ଗକୁ ନଡ଼ିଆ ତେଲ ।।

ଖରାଦିନେ-
ଯେବେ ହୋଇଯାଏ ସଂଜବେଳ ।
ଅଗଣାରେ ଖଣ୍ଡେ ମସିଣା ବିଛାଇ
ଆମେ ସବୁ ଯେତେ ଭାଇ ଓ ଭଉଣୀ
ବସୁ ହୋଇ ଏକମେଳ ।।

ଜେଜେମା ଆସି କହନ୍ତି-
ଏ...କି ଗରମ ଗୁଳୁଗୁଳି ?
ଛୁଆଗୁଡ଼ାକ ମୋ ପଡ଼ିଅଛନ୍ତି ଝାଉଁଳି ।।

ନଡ଼ିଆତେଲକୁ ହଳଦୀରେ ଦେଇ ଢାଳି,
ଗୋଳାଗୋଳି କରି ଆମ ସମସ୍ତଙ୍କ
ଦେହରେ ଦିଅନ୍ତି ବୋଳି ।।

ସୁଖିଗଲା ପରେ ଦେହ ଗୋଡ଼ ହାତ ଘଷି ।
ଛଡାଇ ଦିଅନ୍ତି ମକୁକୁଟି ସବୁ
ପିଠିକୁ ଆମ ଆଉଁଶି ॥

ଥଣ୍ଡା ଲାଗେ ଆମ ଦେହ ।
ଖାଇପିଇ ଆମେ ଗଡିଯାଉ ସେଠି
ନଥାଏ ମଶାଙ୍କ ଭୟ ॥

ସମୟ ଯାଇଛି ବିତି ।
ସଂଖ୍ୟାରେ କମ୍ ହୋଇଥିଲେ ମଧ
ଆଜି ଅଛନ୍ତି ନାତୁଣୀ ନାତି,
ହେଲେ ଭାଗ୍ୟର ଏ ବିଡ଼ମ୍ବନା
ଜେଜେ ମାଆ ତାଙ୍କ ପାଖରେ
ରହୁ ନାହାନ୍ତି ॥



ସମୟକ୍ରମେ ଆମର ଖାଦ୍ୟପାନୀୟରେ ମଧ୍ୟ ପରିବର୍ତ୍ତନ ହୋଇଛି । ଗାଆଁରେ ମୋ ପିଲାବେଳେ ପ୍ରାତଃ ଭୋଜନ, ମଧ୍ୟାହ୍ନ ଭୋଜନ ଓ ରାତ୍ର ଭୋଜନର ଖାଦ୍ୟ ସାମଗ୍ରୀ ସବୁ ବହୁ ଭାବରେ ପରିବର୍ତ୍ତନ ହୋଇଛି । ସେଇ ସମ୍ବନ୍ଧୀୟ ମୋର ଏହି କବିତାଟି ନିମ୍ନରେ ପ୍ରଦାନ କରୁଛି ।

## ବଦଳୁଛି ଆମ ଆହାର

ସକାଳ ଭୋଜନ ଥିଲା ସେ କାଳରେ
ପଖାଳ ସାଙ୍ଗକୁ ବଡିଚୁରା ଆଉ ସାଗ ।
ଆଜିକାଲି ବ୍ରେଡ ବଟର ସାଙ୍ଗକୁ
ଜାଆମ୍ ଆମଲେଟ୍ ଆଉ ବଏଲ୍ଡ ଏଗ୍ ॥

ବିଲକାମ ସାରି ଘରର ମଣିଷ
ଘରକୁ ଫେରଇ ହୋଇଲେ ଖାଇବା ବେଳ ।
ବାଢି ଥୋଇଦିଏ ଘରର ଘରଣୀ
ଭାତ ଥାଳି ସଙ୍ଗେ ବଡି ବାଇଗଣ ଝୋଳ ॥

ମଧ୍ୟାହ୍ନ ଭୋଜନ କହନ୍ତିନି କେହି
ଆଜିକାଲି ସର୍ବେ କହନ୍ତି ଏହାକୁ ଲଞ୍ଚ୍ ।
ଆମିଷାଦି ନାନା ବ୍ୟଞ୍ଜନ ସହିତ
ଥଣ୍ଡା ପାନୀୟରେ ସଫ୍ଟ ଡ୍ରିଙ୍କ ବିଅରର ପଞ୍ଚ୍ ॥

ମୁହଁସଞ୍ଜବେଳେ ମାଆ ଦେଉଥିଲେ
ଅଣ୍ଟିରେ ଅଣ୍ଟିଏ ମୁଢ଼ି ଅବା ଚୁଡାଭଜା ।
ଚୋବେଇବା ସହ ଖେଳୁଥିଲୁ ଆମେ

ସାଙ୍ଗସାଥୀ ମିଶି ଲାଗୁଥିଲା ବଡ଼ ମଜା ।।
ଆଜିକାଲି ଲୋକେ ସନ୍ଧ୍ୟାରେ ନିଅନ୍ତି
ବିସ୍କୁଟ୍ ଆଉ ମିକ୍ଶ୍ଚର ସାଙ୍ଗକୁ ଚାହା ।
ମୁଢ଼ିଚୁଡା ଯିଏ ଚୋବାନ୍ତି ସେମାନେ
ଆଜିକାଲି ଯୁଗେ ଅଟନ୍ତି ମଫସଲିଆ ।।

ରାତ୍ରିଭୋଜନରେ କେବେ କେବେ ଭାତ
ଖାଉଥିଲୁ ପୁଣି କେବେ ଯେ ଚକୁଳି ପିଠା ।
ତା'ସାଙ୍ଗକୁ ମାଆ ଦେଉଥିଲେ କ୍ଷୀର
ମୁଗର ଡାଲମା ପକାଇ ପଣସ କଠା ।।

ରାତ୍ରି ଭୋଜନର ନାଆଁ ବଦଳାଇ
ଆଜିକାଲି ତାକୁ କହୁଛନ୍ତି ଲୋକେ ଡିନର ।
ଡିନରରେ ନାନ୍ ଚିକେନ୍ ତଡ୍କା
ସାଙ୍ଗକୁ ଗ୍ରୀନ୍ ସାଲାଡ୍ ବିଦେଶୀ ଲିକର ।।

ସମୟ ସ୍ରୋତରେ ସମାଜରେ ଆମ
ବଦଳିଛି ଚାଲିଚଳଣ ସାଙ୍ଗକୁ ଆହାର
ସମୟର ତାଳେ ତାଳେ ଆମକୁ ବି
ବଦଳାଇବାକୁ ପଡିବ ଆମର ନଜର ।।



ସମୟ ବଦଳିବା ସହିତ ଆମର ପରିବାରର ଢାଞ୍ଚାରେ ମଧ୍ୟ ଏକ ବିରାଟ ପରିବର୍ତ୍ତନ ଦେଖିବାକୁ ମିଳୁଛି । ମୋର ପିଲାବେଳ ଗାଆଁ ମାନଙ୍କରେ ଯେପରି ଯୌଥ ପରିବାର ଦେଖିବାକୁ ମିଳୁଥିଲା ଆଜିକାଲି ସେପରି ପରିବାର ଆଉ ଦେଖିବାକୁ ମିଳୁନାହିଁ । ଗାଆଁ ହେଉ ବା ସହର ଉଭୟ ସ୍ଥାନରେ ସମସ୍ତେ ଛୋଟ ପରିବାର ପାଇଁ ଆଗ୍ରହୀ । ଏହାର ପ୍ରଭାବ ଆମର ପରିବାର ଓ ସମାଜରେ ଥିବା ସମ୍ପର୍କର ଶୂନ୍ୟସ୍ଥାନ ସୃଷ୍ଟି ହେଲାଣି । ଏହି ଶୂନ୍ୟସ୍ଥାନକୁ ଭବିଷ୍ୟତ ବଂଶଧର ପୂରଣ କରିବାର ସମ୍ଭାବନା ନାହିଁ କହିଲେ ଚଳିବ । ଏହି ପୃଷ୍ଠଭୂମି ଉପରେ ମୋ ମନକୁ ଆସିଥିବା ଭାବନାକୁ ମୁଁ କବିତାରେ ରୂପ ଦେଇଛି ଯାହାକି ନିମ୍ନରେ ପଦାନ କରାଗଲା ।

## ସମ୍ପର୍କର ଶୂନ୍ୟସ୍ଥାନ

ଛୋଟ ପରିବାର ସୁଖୀ ପରିବାର
ନେଲେ ସର୍ବେ ଆପଣେଇ
ପୁଅ ହେଉ କି ସେ ଝିଅ ହେଉ
ଆଉ ଏକରୁ ଅଧିକ ନାହିଁ ॥

ପରିବାର ମଧ୍ୟେ ଭାଇ କି ଭଉଣୀ
ଡାକିବାକୁ ନାହିଁ କେହି
ନାହାଁନ୍ତି ଦିଅର ନାହାଁନ୍ତି ଭାଉଜ
ନଣନ୍ଦ କି ନଣଦେଇ ॥

ବଡ଼ବାପା ବଡ଼ବୋଉ ଦାଦା ଖୁଡ଼ୀ
ମିଳିବେନି ପରିବାରେ
ଶଳା ଶାଳୀ ଆଉ ମିଳିବେନି ଯେବେ
ଯିବ କେ ଶଶୁର ଘରେ ॥

ମିଳିବେନି ଦେଢ଼ଶ୍ୱଶୁର ଦେଢ଼ଶାଶୁ
ଯାଆ ଆଉ ମାମୁଁ ମାଇଁ
ମଉସା ମାଉସୀ ପିଉସା ପିଉସୀ
ଡାକ ବି ଶୁଭିବ ନାହିଁ ॥

ଘରେ ଏକା ଥିବେ ବୃଦ୍ଧ ପିତା ମାତା
ପୁଅବୋହୂ କର୍ମସ୍ଥଳେ
ସାହା ହେବା ପାଇଁ ପାଶେ କେ ନଥିବେ
ବିପଦ ଆପଦ ବେଳେ ॥



ସମୟ ଗଡ଼ି ଚାଲିଛି । ପିଲାବେଳଟା କାଲି ପରି ଲାଗୁଛି । ହେଲେ ଆଜି ମୁଁ ଜୀବନର ଶେଷ ପର୍ଯ୍ୟାୟରେ ଉପନୀତ । ବିତିଗଲା ସମୟ ଫେରେନା । ଆଜି ମୋର ପୌତ୍ର, ନାତି ଓ ନାତୁଣୀମାନଙ୍କୁ ଦେଖିଲେ ଶୈଶବର ସ୍ମୃତି ଉଜ୍ଜୀବିତ ହୁଏ ମାନସ ପଟରେ । ଛୋଟପିଲା ଥିଲାବେଳେ ଶୀଘ୍ର କିପରି ବଡ଼ ହେବାକୁ ଇଚ୍ଛା ହେଉଥିଲା କିନ୍ତୁ ଏବେ ଏହି ପରିଣତ ବୟସରେ ଇଚ୍ଛା ହୁଏ ପୁଣିଥରେ ମୁଁ ପିଲା ହୋଇଯାଆନ୍ତିକି । ପିଲାରୁ ଜଣେ ଧୀରେ ଧୀରେ ବଡ଼ ହୋଇପାରିବ କିନ୍ତୁ ତାର ବୀପରିତ କେବେ ସମ୍ଭବ ନୁହେଁ । ସେହିପରି ଏକ ମନର ଭାବନାକୁ କବିତାରେ ଚିତ୍ରଣ କରିବାକୁ ଚେଷ୍ଟା କରିଛି । କବିତାଟି ନିମ୍ନରେ ପ୍ରଦତ୍ତ ।

# ବିଚିତ୍ର ଏ ମନ ମୋର

ଯେତେବେଳେ ଛୋଟ ପିଲା ଥିଲି,
''ପାପା'', ''ମାମା'' ଏଇ କେତୋଟି ଶବ୍ଦ ମୁଁ
ଖନେଇ ଖନେଇ କହୁଥିଲି ।। ୧ ।।

ମନ ମୋର ଯାହା କରୁଥିଲି,
ଖେଳଣା କଣ୍ଢେଇ ଆସୁଥିଲା ଯେତେ
ସବୁ ଭାଙ୍ଗି ମଜା ନେଉଥିଲି ।। ୨ ।।

ନିଜକୁ ମୁଁ ବଡ଼ ଭାବୁଥିଲି,
ପାପାଙ୍କର ଯୋତା ଚପଲ ପିନ୍ଧିକି
ଘର ଅଗଣାରେ ଚାଲୁଥିଲି ।। ୩ ।।

ଗାଲୁ ଗାଲୁ କରି ଗପୁଥିଲି,
ଜେଜେ, ଜେଜେମା ଖୁସି ହେଉଥିଲେ
ପରିବାର ମନ ମୋହୁଥିଲି ॥ ୪ ॥

ବୟସ ମୋ ଚାଲିଥିଲା ବଢ଼ି,
ସ୍କୁଲ୍‌ରେ ମୋର ନାମ ଲେଖିଦେଲେ
ବାହାରିଲି ମୁଁ ପାଠ ପଢ଼ି ॥ ୫ ॥

ଯୁବା ବୟସ ମୋ ଆସିଗଲା,
ପାଠପଢ଼ା ସାରି ବାହା ସାହା ହେଲି
ସଂସାରୀ ଜୀବନ ତାଙ୍କୁ ହେଲା ॥ ୬ ॥

ସମୟ ଚାଲିଲା ଗଡ଼ି ଗଡ଼ି,
ପଡ଼ି ଉଠି ଧାଇଁ ବୃଦ୍ଧ ମୁଁ ହେଲିଣି
ହାତରେ ମୋ ଆଜି ଆଶାବାଡ଼ି ॥ ୭ ॥

ମନ ଖୋଜେ ଆଜି ପିଲାବେଳ,
ପିଲାବେଳେ ଶୀଘ୍ର ବଡ଼ ହେବା ପାଇଁ
ଏଇ ମନ ଥିଲା କି ଚଞ୍ଚଳ ॥ ୮ ॥

ବଡ଼ ବିଚିତ୍ର ଏ ମନ ମୋର,
ଯେତେବେଳେ ଯାହା ଚାହିଁଲେ କିଏ ସେ
ପୂରଣ କରିବ ଇଚ୍ଛା ତାର ।। ୯ ।।



ଗ୍ରାମ୍ୟ ଜୀବନର ସମସ୍ତ ଅନୁଭୂତି ଓ ବାଲ୍ୟକାଳର ସମସ୍ତ ଘଟଣାବଳୀକୁ ଏକ କ୍ଷୁଦ୍ର ପୁସ୍ତକରେ ଲିପିବଦ୍ଧ କରିବା ସମ୍ଭବ ନୁହେଁ । ଯେତିକି ସମ୍ଭବ ହୋଇଛି ତାହା ହିଁ ଉପସ୍ଥାପନ କରିଛି । ଭଲ ଲାଗିବା ନ ଲାଗିବା ପାଠକମାନଙ୍କ ଉପରେ ଛାଡ଼ି ଦେଉଛି ।



ଶ୍ରୀ ବାଉରିବନ୍ଧୁ ଲେଙ୍କାଙ୍କର ଜନ୍ମ ତା୧୨.୦୨.୧୯୫୩ରିଖ ରେ କଟକ ଜିଲ୍ଲାର ଏକ ଅକ୍ଷାତ ଗ୍ରାମ ତରଡ଼ାପଡ଼ାରେ ହୋଇଥିଲା । ପାଠପଢ଼ା ସମୟରେ କବିତା ପ୍ରତି ଯଦିଓ ତାଙ୍କର ବହୁତ ଆଗ୍ରହ ଥିଲା ନିଜ ଭିତରେ ସେ ତାଙ୍କର ପ୍ରତିଭାକୁ ଲୁଚାଇ ରଖିଥିବାରୁ ଲୋକଲୋଚନକୁ ଆସିପାରି ନଥିଲା । କଲେଜରେ ପଢ଼ିବା ସମୟରେ ରଚିତ ତାଙ୍କର କିଛି କବିତା ତାଙ୍କର ପ୍ରଥମ କବିତା ସଂକଳନ ''ଖୋଲି କହିଦେଲି କଥା ମନର''ରେ ପ୍ରକାଶିତ ହୋଇଛି । ଶ୍ରୀ ଲେଙ୍କା ପାଠପଢ଼ା ପରେ ବ୍ୟାଙ୍କ ସେବାରେ ସେବାରତ ରହି ସାହିତ୍ୟ ସାଧନାକୁ ସମ୍ପୂର୍ଣ୍ଣ ରୂପେ ଛାଡ଼ି ଦେଇଥିଲେ । ଅବସର ନେବା ପରେ ପୁନଶ୍ଚ ତାଙ୍କର ମନରେ ସାହିତ୍ୟ ପ୍ରତି ଅନୁରାଗ ସୃଷ୍ଟି ହୋଇଥିଲା ଓ ସେ କବିତା ଲେଖାରେ ନିଜକୁ ହଜାଇ ଦେଇଛନ୍ତି । ବିଶେଷକରି ମହାପ୍ରଭୁ ଜଗନ୍ନାଥ ଓ ଅନ୍ୟାନ୍ୟ ଦେବଦେବୀମାନଙ୍କୁ ଆଧାର କରି ତାଙ୍କର କେତେଗୁଡ଼ିଏ ଭକ୍ତି ରଚନାର ସଂକଳନ ''ଶୁଣ ଗୁହାରି ହେ ବିଶ୍ୱବିହାରୀ'' ପ୍ରକାଶିତ ହେବାକୁ ଯାଉଛି । ତାଙ୍କର ଅନେକ କବିତା ଅପ୍ରକାଶିତ ଅବସ୍ଥାରେ ରହିଛି । କ୍ରମଶଃ ତାହା ପ୍ରକାଶିତ ହେବ ବୋଲି ଆମେ ଆଶା କରୁଛୁ । ''ଶୁଣ ଗୁହାରି ହେ ବିଶ୍ୱବିହାରୀ'' ପାଠକମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ଆମର ଦୃଢ଼ ବିଶ୍ୱାସ ।

ଶ୍ରୀ ଲେଙ୍କାଙ୍କର ଲେଖନୀରୁ ଆହୁରି ଅନେକ କବିତା ସୃଷ୍ଟି ହେଉ ଏବଂ ତାହା ପାଠକୀୟ ଆଦୃତି ଲାଭ କରୁ ଏହା ହିଁ ଆମର କାମନା ଓ ପ୍ରାର୍ଥନା ।

ଆସ୍ଥା ମିଡିଆ,
ଭୁବନେଶ୍ୱର